# କଳାକ୍ରାନ୍ତି ଓ ଅନ୍ୟାନ୍ୟ କବିତା

ତ୍ରିଲୋଚନ ସିଂହ

ଚିତ୍ରୋତ୍ପଳା ପବ୍ଲିକେଶନ୍ସ
ବଟେଶ୍ୱର, ସାଲେପୁର, କଟକ-୭୫୪୨୦୨

# କଳାହାଣ୍ଡି ଓ ଅନ୍ୟାନ୍ୟ କବିତା

କବିତା ସଂକଳନ

ଲେଖକ : ତ୍ରିଲୋଚନ ସିଂହ ▪ ପ୍ରକାଶକ : ଚିତ୍ରୋତ୍ପଳା ପବ୍ଲିକେଶନ୍, ବଟେଶ୍ୱର, ସାଲେପୁର, କଟକ-୭୫୪୨୦୨ ▪ ପ୍ରଚ୍ଛଦପଟ ବିଜୟ ପ୍ରଧାନ ▪ ମୁଦ୍ରଣ : ଟେକ୍ନୋ ଆର୍ଟସ ଅଫ୍‌ସେଟ୍, କଲ୍ୟାଣୀନଗର, କଟକ-୧୩ ▪ ମୂଲ୍ୟ: ଟ. ୪୫/-

ପ୍ରଥମ ପ୍ରକାଶ :
ରଜ ସଂକ୍ରାନ୍ତି ▪ ୧୯୯୯

## KALAHANDI O ANYANYA KABITA

A Collection of Poems

Author Trilochan Singh ▪ Publisher **CHITROTPALA PUBLICATIONS**, Bateswar, Po. Salipur, Cuttack-754202 ▪ Cover design : Bijoy Pradhan ▪ Printed at : Techno Arts Offset, Kalyani Nagar, Cuttack-13 ▪ Price : Rs.45/-

First Edition :
Raja Sankranti ▪ 1999

ISBN : 81 - 86556 - 29 - X

**ଉତ୍ସର୍ଗ :**

ମୋର ପରମ ପୂଜ୍ୟ ପିତା

ଁ **ବାମଦେବ ସିଂହ**

ଏବଂ

ପରମ ପୂଜ୍ୟା ମାତା

ଁ **ମନମୋତୀ ବାଈଙ୍କ**

ପବିତ୍ର

ପଦକମଳରେ......

— ଲେଖକ

# ନିଜକଥା

କବିତା ଲେଖିବା ସଉକ୍ ଶୈଶବାବସ୍ଥାରୁ । କବିତାଟେ ଲେଖିବି କହି କଲମ ଧରିଲେ ଲେଖି ହେଇଯାଉଥିଲା । ମୁଖ୍ୟତଃ ମୁଁ ପଢ଼ିଥିବା ସ୍କୁଲ ମାନଙ୍କରେ ହାତ ଲେଖା ମେଗାଜିନ ପ୍ରକାଶ କରିବାରେ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ଛାତ୍ରଛାତ୍ରୀ ମାନଙ୍କୁ ଲେଖା ଲେଖି କରିବା ପାଇଁ ଉତ୍ସାହିତ କରିବା ଥିଲା ମୁଖ୍ୟ ଉଦ୍ଦେଶ୍ୟ । ତେଣୁ ପ୍ରତ୍ୟେକ ସ୍କୁଲ ମେଗାଜିନ ପାଇଁ କବିତା, ଗଳ୍ପ, ପ୍ରବନ୍ଧ ଲେଖୁଥିଲି । ପ୍ରକାଶିତ ହେଉଥିଲା ଏବଂ ସହାଧ୍ୟାୟୀମାନେ ପଢ଼ି ଖୁସି ହେଉଥିଲେ । କଲେଜ ଜୀବନରେ ନିଜ ଲେଖା ସବୁ ଛପା ଅକ୍ଷରରେ ପଢ଼ିବାର ସୁଯୋଗ ମିଳୁଥିଲା । ବିଭିନ୍ନ ପତ୍ର ପତ୍ରିକାକୁ ଲେଖାସବୁ ପଠାଇ ଏକ ବୃହତ୍ତର ପାଠକଗୋଷ୍ଠୀ ମଧ୍ୟରେ ପରିଚିତ ହେବାର କଳ୍ପନା ଆଦୌ ନଥିଲା ।

ସେ ପ୍ରଚେଷ୍ଟା ସେ ସମୟରେ ନ ଥିଲା; ବର୍ତ୍ତମାନ ମଧ୍ୟ ନାହିଁ । ସାମୟିକ ଭାବରେ କେବେ କିମିତି ପ୍ରତିଷ୍ଠିତ ପତ୍ରପତ୍ରିକା ମାନଙ୍କୁ ଲେଖା ପଠାଇଛି । ପ୍ରକାଶିତ ହେଲେ ଖୁସି ହେଉଛି ନ ହେଲେ ମାମୁଲି କଥା ବୋଲି ଧରି ନେଇଛି । ପତ୍ର ପତ୍ରିକାରେ ଲେଖା ପ୍ରକାଶ ପାଇଁ କାବ୍ୟିକ ପ୍ରତିଭା ବାହାରେ ଅନ୍ୟ ବିଶେଷ ପ୍ରତିଭାର ଆବଶ୍ୟକ ବୋଲି ଅନେକ ଲେଖକ ମନ୍ତବ୍ୟ ପ୍ରକାଶ କରନ୍ତି । ସେଇ ବିଶେଷ ପ୍ରତିଭାର ଅଭାବ ମୋପାଖରେ ଅନୁଭବ କରିଛି । ତେଣୁ ବିଜ୍ଞାପନର ମୂଷିକ ଦୌଡ଼ (Rat-Race)ରେ ସାମିଲ ହେବାକୁ ପ୍ରୟାସ କରିନି । କାରଣ ପରାଜୟର ଗ୍ଲାନି ସହଜରେ ହଜମ କରିବାର । ଆନ୍ତରିକ ବଳ ନାହିଁ ।

ଥରେ ମୋର ଜଣେ ପ୍ରତିଷ୍ଠିତ ସାହିତ୍ୟିକ ସହକର୍ମୀ କହିଲେ– "ଆପଣ ସୁନ୍ଦର କବିତା ସବୁ ଲେଖୁଥିଲେ ପତ୍ର ପତ୍ରିକାରେ, ଆଉ ପଢ଼ିବାକୁ ମିଳୁନି । ଆଜ୍ଞା, ଧନ, ଜନ କିଛି ରହିବ ନାହିଁ । କେବଳ ଆମର ସାହିତ୍ୟ କୃତି ଏ ମାଟିରେ ରହିଯିବ ।" ଅତି ସତ କଥାଟେ କହିଥିଲେ ସେଦିନ । ମୋର କବିତା ସବୁକୁ ପ୍ରକାଶ କରିବା ପାଇଁ ପରାମର୍ଶ ମଧ୍ୟ ଦେଲେ । ମୁଁ ଉତ୍ସାହିତ ହେଲି । କବିତା ସଂକଳନଟିଏ ପ୍ରକାଶ କରିବାକୁ ଚିନ୍ତା କଲି ।

ପୁରୁଣା କବିତା ଗୁଡ଼ିକୁ ଏକତ୍ରିତ କରିବା ପ୍ରଚେଷ୍ଟା ସଫଳ ହେଲା ନାହିଁ । ଚାକିରୀ ଜୀବନରେ ବିଭିନ୍ନ ସ୍ଥାନକୁ ପରିବର୍ତ୍ତନ ଭିତରେ ଅନାବନା କାଗଜ ପତ୍ର ସହ କବିତା ଗୁଡ଼ିକ ମଧ୍ୟ ସାମିଲ ହେଉଥିଲେ । କିନ୍ତୁ ଶିକ୍ଷକତାର ଶେଷଦଶନ୍ଧି (୧୯୮୫ ରୁ ୯୫) ଏକ ନିର୍ଦ୍ଦିଷ୍ଟ ସ୍କୁଲରେ ରହିବାର ସୁଯୋଗ ପାଇଲି । ଏଣୁ ଏଇ ଦଶନ୍ଧିର କବିତା ସଂକଳନ ରୂପେ ପ୍ରକାଶ କରିବା ଉପଯୁକ୍ତ ମନେକଲି ।

କବିତା ସଂକଳନର ଏକ ଦୀର୍ଘ କବିତା ''କଳାହାଣ୍ଡିର କଳାରାତି'' ସହ ଅନ୍ୟ ୩୩ଟି କବିତା ସନ୍ନିବେଶିତ । 'କଳାହାଣ୍ଡି' ଶବ୍ଦ ମାନେ ହିଁ ଏକ ଅନନ୍ତକ୍ଲିଷ୍ଟ, ଅବହେଳିତ ଦାରିଦ୍ର୍ୟର ସୀମାରେଖା ତଳେ ଚାପି ହେଇ ରହିଥିବା ଜନପଦକୁ ବୁଝାଏ । ପତ୍ର ପତ୍ରିକାରୁ ବିଷୟବସ୍ତୁ ଆହରଣ କରି ମୁଁ ଏ କବିତା ଲେଖିନି । କଳାହାଣ୍ଡି ଦାରିଦ୍ର୍ୟର ମୂକସାକ୍ଷୀ ମୋର ସମସ୍ତ ଜୀବନ । ଏହି କବିତାଟି ମୋର ଉଷ୍ଣରକ୍ତ ଓ ଲୁହର କବିତା, ମୋର ନିଜ ନିର୍ମମ ଅନୁଭବର କବିତା । ଅଙ୍ଗେ ଅଙ୍ଗେ ଲିଭେଇଛି ଗାଁ ମୁଖିଆମାନଙ୍କ ପରସ୍ୱ ଅପହରଣର ହୀନ ଚକ୍ରାନ୍ତ । ମୋର ପୂର୍ବଜମାନେ ସେଇ ଚକ୍ରାନ୍ତର ଶୀକାର ହୋଇ ଦାଣ୍ଡର ଭିକାରୀ ସାଜି ବର୍ତ୍ତମାନ ଯାଏଁ କୂଳ କିନାରା ପାଇ ନାହାନ୍ତି । ମୋ ପରିବାର ମଧ୍ୟ ସେ ଚକ୍ରାନ୍ତରୁ ବାଦ୍ ଯାଇନି । ଦାରିଦ୍ର୍ୟର ଅସଲ ରୂପ ମୁଁ ଅତି ନିକଟରୁ ଦେଖିଛି । ତାର ନଖ ଦନ୍ତର କ୍ଷତ ବର୍ତ୍ତମାନ ସୁଦ୍ଧା ପୂରଣ ହେଇନି । କଳାହାଣ୍ଡିର ସ୍ୱାଭିମାନ ନାମରେ ରାଜନୀତିର 'ସରଖିଆ' ଗୋଷ୍ଠୀ ସହଜ ଭାବରେ ଏ କବିତାକୁ ଗ୍ରହଣ କରିପାରିବେ ନାହିଁ । କାରଣ ସେମାନେ ହିଁ କଳାହାଣ୍ଡି ଦାରିଦ୍ର୍ୟର ଠିକାଦାର । ଏତିକି କହିଲେ ଯଥେଷ୍ଟ ହେବ ଯେ, 'କଳାହାଣ୍ଡିର କଳାରାତି' କବିତାଟି ଏ ମାଟିର ଜନଜୀବନର ଏକ ସଂକ୍ଷିପ୍ତ ମୁଖବନ୍ଧ ମାତ୍ର । ଖୁସିର କଥା ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ପରେ କଳାହାଣ୍ଡିର ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଜୀବନ ଧାରାରେ କିଛିଟା ଉନ୍ନତି ଆଶା କରାଯାଉଛି । ଜୀବନକାଳ ମଧ୍ୟରେ ଏକ ଉନ୍ନତ କଳାହାଣ୍ଡି ଦେଖିବାକୁ ମିଳିଲେ ସ୍ୱପ୍ନ ସାର୍ଥକ ହେଲା ବୋଲି ଆଶ୍ୱାସନା ମିଳିବ ।

ସଂକଳନରେ ସନ୍ନିବେଶିତ ୩୪ଟି କବିତା ଆଧୁନିକ ଶୈଳୀରେ ଲିଖିତ ମୁକ୍ତ କବିତା । ସେ ଗୁଡ଼ିକ ମଧ୍ୟ ଅନୁଭୂତିସିଦ୍ଧ କବିତା । ଏପରିକି କବିତା ''ଏଲିଜି: ଏକ ଦୁର୍ଘଟଣା ଗ୍ରସ୍ତ ବିମାନର'' ସ୍ୱଚକ୍ଷୁରେ ଦେଖିଥିବା ଏକ ଦୁର୍ଘଟଣାଗ୍ରସ୍ତ ବିମାନ ଉପରେ ଆଧାରିତ । 'ପ୍ରେମ', 'ବିରହ', 'ମାନବିକତା' ଆଧୁନିକ ଜୀବନାନୁଭୂତି 'ନୈରାଶ୍ୟ ଓ 'ବିଷନ୍ନତା ବୋଧ' ଆଧୁନିକ କବିତାର ଉଚ୍ଚାରିତ ଅନ୍ତଃସ୍ୱର । ସେ ସମସ୍ତ ଭାବନାରୁ ମୋ କବିତା ସମୂହ ମୁକ୍ତ ନୁହେଁ । ସେଇ ନୈରାଶ୍ୟର ଅମା ଅନ୍ଧାର ଭିତରୁ ଯଦି ଆଲୋକର ଆଶା-ରଶ୍ମି ବିଚ୍ଛୁରିତ ହୋଇ ସୁଧୀ ପାଠକ ପାଠିକା ମାନଙ୍କୁ ଆନନ୍ଦ ପ୍ରଦାନ କରି ପାରନ୍ତା ତେବେ ମୋର ଶ୍ରମ ସାର୍ଥକ ହେଲା ବୋଲି ଆଶ୍ୱସ୍ତ ହେବି । ଇତି ।

ବିନୀତ

ଲେଖକ

ଜୁନାଗଡ଼

୧୫.୧୦.୯୫

ରବିବାର ।

# ସୂଚୀ





# ସ୍ୱଗତୋକ୍ତି:ଲିଭି ଆସୁଥିବା ଦୀପର

ଗାଢ଼ ଅନ୍ଧକାରର ଗାଲିଚା ଦେହରୁ
ରୋମନ୍ଥନ କରି ଅନ୍ଧାରକୁ
ଶୋଷିନେଇ ଜୀବନର ସମସ୍ତ ନିର୍ଯ୍ୟାସ
ଦୀପଟିଏ ହୋଇ ଜଳିବାକୁ
ଜାରିରଖେଁ ନିରନ୍ତର ସଂଗ୍ରାମ
ଜୀବନ -ମୃତ୍ୟୁର ।

ଅନ୍ଧକାରର ଯେତେ ସବୁ ଜନ୍ମିତ
ସରୀସୃପ, ନିଶାଚର ଓ ଅପଦେବତା ମାନେ
ଅନ୍ଧକାରର ଶୂନ୍ୟ ସିଡ଼ିରୁ ପ୍ରସାରିତ କଟାହାତ
ଓ ବିକୃତ ସୟତାନୀ ହସ
ତଣ୍ଟି ମୋର ଚିପି ଧରିବାକୁ ।
ଆମେ ସବୁ ସଦ୍ୟଜାତ ବସୁଦେବ ସଂତାନମାନେ
ସମର୍ପିତ କଂସର ହାତରେ ।
ସମାଜ ଧାରାରୁ ଛିଟିକି ପଡ଼ିଥିବା
ପଥଭ୍ରଷ୍ଟା କୁଆଁରୀ ଝିଅଟିଏ
ମୃତ୍ୟୁ ସହ ଅଭିସାର ରଚେ;
ଅନ୍ଧକାରର ପରଦା ଟାଣି
ମାପିନିଏ ମୃତ୍ୟୁର ଘାଟ
ହାତେ ତାର ଦୀପଟିଏ ସାଥୀ ।
ଜଳେ ମୁଁ ଆକାଶ ଦୀପ
ବିଧବାର ଇହକାଳ ପରକାଳର ସାକ୍ଷୀଟିଏ ହୋଇ
ନିଃସଙ୍ଗ ଆକାଶର ତାରାଙ୍କ ଗହଣେ
ମୁଁ ଜଳୁଥାଏ ନିରନ୍ତର
ପ୍ରେତାତ୍ମାର ସଦ୍‌ଗତି ପାଇଁ

ମୋର ସିଦ୍ଧି
ମୋର ଜ୍ୱଳନ
ମୋ ତପସ୍ୟା କାହାପାଇଁ ?
ସୂର୍ଯ୍ୟସୁତା ମୁଁ:–
ଜୀବନ ମୋ ଜୀବନ୍ତ ଦହନ ।

କିଏ ସେ ଧାତ୍ରୀ ଦୀପହସ୍ତା
ସେବାର ପ୍ରେମିକା
ବିଭୀଷିକାମୟ ସମର ଶିବିରେ
ରକ୍ତାକ୍ତ ସୈନିକର ଶେଷ ନିଃଶ୍ୱାସ ପାଇଁ
ଜୀବନ ଦିଅଇ ଢ଼ାଳି
ହେବାପାଇଁ ପାରି, ରକ୍ତଉଷାର ଆରପାରି
ଏକାକୀ ଶବାରି
ଅସ୍ତ ସୂର୍ଯ୍ୟର ଲାଲ ଘୋଡ଼ା ଚଢ଼ି ।
ଜଳେଁ ମୁଁ ରାଣୀ ହଂସ ପୁରେ
କୃଷକର କୁଳୀନ କୁଟୀରେ ।
ଜଳିଚି ମୁଁ ପିପାସିତ କୁଳଦୀପ ହୋଇ
ନବବଧୂର ଅନ୍ତର ଭିତରେ
ବାସର ଶଯ୍ୟାରେ ଶୁଣିଚି ମୁଁ ଛଳନାର
ଜୀବନ-ସଂକଳ୍ପ ।
ମଧୁ ଯାମିନୀର ମରୁଶଯ୍ୟାରେ
ନବ ବଧୂର କଳ୍ପନାର ସ୍ଫଟିକ ମିନାରଟିଏ
ଜଳିଯାଏ ଯୌତୁକର ଆଗ୍ନେୟ ବନ୍ୟାରେ
ନିର୍ବାକ, ନିସ୍ପନ୍ଦ, ବାତାହତ ଶିଖାଟିଏ
ସମର୍ପିତ ହୁଏ ଅନ୍ଧାରକୁ ।
ମୁଁ ଜଳୁଥାଏଁ ଯେ ଜଳୁଥାଏଁ
ନିରନ୍ତର ଆତ୍ମ ଦହନରେ ।

■■■

# ଜୀଅନ୍ତା ନଈର ଜଳଛବି

## ଜଳଛବି-୧

ମାଛରଙ୍କା ପକ୍ଷୀଟା ବସି
ଶିଉଳି ମଖା ପଥର ଖଣ୍ଡରେ
ଦନ୍ଥଡ଼ା ଅଣ୍ଟ ପଜାଉଛି
ନିଜତା ନଖରେ । ନଖଟି ଚିକ୍‌ଚିକ୍ ଶାଣଦିଆ ନହୁରୁଣିଟି ପରି
ଷ୍ଟେନଲେସ୍ ସଫେଦ ଖରାରେ ।
ହୁଏତ ଆଗାମୀ ସଂଗ୍ରାମ ପାଇଁ
ପ୍ରସ୍ତୁତି ଚାଲିଛି,
ଶିଶୁପୁତ୍ର ବେଲାଳସେନ ପରି
ମହାଭାରତର ଉଦ୍‌ଯୋଗ ପର୍ବରେ ।

## ଜଳଛବି-୨

ନିରାଶ୍ରିତ ଶବଟିଏ ଏକଲା ବାଟୋଇ
ନିଜର ଧର୍ମ କର୍ମ, ପାପପୁଣ୍ୟର ଗଣ୍ଠିଲି ସଜାଡ଼ି
ପଣ୍ୟବାହୀ କୋକେଇ ସାଙ୍ଗରେ
ଶେଷଯାତ୍ରା ଆରମ୍ଭିଛି ପଥହରା—
ମୌସୁମୀ ବନ୍ୟାରେ ।
ନଦୀକୂଳ ଥୁଣ୍ଟା ଗଛଟିରେ
ଶାଗୁଣାଙ୍କ ନୀରବ ପ୍ରାର୍ଥନା,
ଜଳତରଙ୍ଗରେ ବାଜି ଉଠେ
ମୃତ୍ୟୁର ଖିଆଲ ।

## ଜଳଛବି-୩

ସୂର୍ଯ୍ୟ ଜଳେ ତପ୍ତ ସ୍ୱର୍ଣ୍ଣମୁଦ୍ରାପରି
ସ୍ୱର୍ଣ୍ଣକାରର କ୍ରସିଂବୁଲ ଦେହରେ ।
ଦିନର ଶେଷାଂଶେ
ତରଳ ସ୍ରୋତ ହୋଇ ବହିଆସେ

ନଦୀର ନିଶ୍ଚଳ ଜଳ ସ୍ରୋତକୁ
ଖଇଫୁଟା ଆକାଶର ତପ୍ତ କଡ଼େଇରୁ
ଶୀତଳତା ପାଇଁ ।
ସବୁ ସ୍ୱର୍ଣ୍ଣିମ ହୁଏ- ନଦୀଜଳ, ଡଙ୍ଗା ଓ ଆହୁଲା
ମନେ ହୁଏ, ଛାଞ୍ଚଢ଼ଳା ଏକ ଟେରାକୋଟା-
ଆର୍ଟର ସୁନାପାଣି ଖିଆ ସିଲହଟ୍ ଛବି ।

## ଜଳଛବି-୪

କିଆଫୁଲିଆ ପୂର୍ଣ୍ଣିମା ରାତିରେ
ମେଘର ପରଦା ଟେକି
ତରଳ ପାରଦଢଳା ଜଳ ଦର୍ପଣରେ
ରହି ରହି ମୁହଁ ଦେଖେ
ସୁନାମୁହାଁ ମଦାଳସା ଜହ୍ନ ।
ମେଘର ପାହାଚ ଚଢ଼ି
ଅଜନବୀ ଅଶ୍ୱାରୋହୀ ଅଟକି ଯାଏ
ଛପି ଛପି ଚୁମୁଥିବା ଜହ୍ନ
ସହର ତଳିର ଲମ୍ବା ଲମ୍ବା
ତାଳ ଓ ନଡ଼ିଆର ଡାଳ ଉହାଡ଼ରେ ।



# ଅନ୍ୟ ଏକ ଧର୍ମପଦ

ସେ ଏକ ଅମାବୃତ ସଂକ୍ରମଣର ରାତ୍ରି,
ମୋ ଆଖିରେ ଭରି ଜୀବନ ଆଲୋକ
ଦୀପଟିଏ ଲିଭିଗଲା ।
ମୁଁ ଏକ କାଳ ଶକୁନ ।
ଅନାଥାଶ୍ରମର ଦୋଳା ହେଲା ମମତାର କୋଳ
ମୋ ଏକାନ୍ତ ନଙ୍ଗର ବିହୀନ ତରୀର
ନିବୁଜ ଶ୍ୟାମଳ ବନ୍ଦର ।
ବାପା ମୋର ଶିଳ୍ପୀ
ନିରୁତା ଉପାସକଟିଏ ରଙ୍ଗ ଓ ତୂଳୀର ।
ଘର ! କଳ୍ପନାର କୋଣାର୍କ ଅବା
ମାନପତ୍ର ଓ ଉପାୟନର ଆଲବମ୍‌ଟିଏ ।
ସମୟର ପାହାଚ ଡେ଼ଇଁ ଉତୁରି ଆସନ୍ତି
ଭଂଜୀୟ ନାୟିକାମାନେ
ଶିଳ୍ପୀର କୁହୁକ ତୂଳୀରେ
ଅଳସ ଭାଂଗନ୍ତି ମୋହନ ଭଙ୍ଗୀରେ
ଭଙ୍ଗା ଆକାଶର ଫଟା ଏକ
ସଫେଦ କ୍ୟାନଭାସ ଦେହରେ ।
ଅତିକ୍ରାନ୍ତ ସମୟର ବାଲିପନ୍ତାରରେ
ସ୍ମୃତିମାନେ କଡ଼ ନେଉଟାନ୍ତି
କୁନି କୁନି ଘଡ଼ିଆଳ ପରି
ଶୀତୁଆ କୋମଳ ସୂର୍ଯ୍ୟର ମଖମଲି ଚନ୍ଦନ ଚର୍ଚ୍ଚାରେ ।
ଶିଳ୍ପୀ ଏକ ଦରଓ୍ୱାନ ଏଠି
ତା ସ୍ମୃତିର କଏଦୀମାନଙ୍କୁ ଜୀବନ୍ୟାସ ଦେଇ
କଡ଼ା ପହରା ଦିଏ
ରୁଦ୍ଧ କାରାଗାର ରେଲିଂ ବାହାରେ
ସଂଧ୍ୟ ଓ ସକାଳେ ।

ସୃଷ୍ଟି ତାଙ୍କ ରହିଗଲା ସ୍ଥିର ଓ ଅପୂର୍ଣ୍ଣ
ସ୍ଥିର ହେଲା ନିହାଣ ମୁଗୁର
ରୂପେଲି ପରଦାର ବାକ୍‌ହୀନ ସ୍ଥିର ଚିତ୍ର ପରି ।

ଶୁଷ୍କ ହେଲା କଳ୍ପନାର ମାନସରୋବର
ମାନସ ଗଙ୍ଗା ଅଭିଶପ୍ତ ବନ୍ଧ୍ୟା ନାରୀଟିଏ ।
ସେଦିନ ଖସି ପଡ଼ିଥିଲା ପର୍ଶୁରାମ ହାତୁ
ଶାଣିତ ପରଶୁ,
ତୃତୀୟ ପାଣ୍ଡବ ହସ୍ତରୁ ଗାଣ୍ଡିବ ଧନୁ;
ଚୂରମାର ହେଲା ଶିଳ୍ପୀର ଅଭିମାନ
ସବୁ ରଂଗ ଉଭେଇଗଲା କଳ୍ପନାର ଆକାଶରୁ
ପକ୍ଷୀମାନେ ଚୁପ୍ ଚାପ ରହିଗଲେ
ଅଦିନିଆ ଘୂର୍ଣ୍ଣି ଓ ବାତ୍ୟାରେ ।
ଝଡ଼ ପରେ ଚରିଯାଏ ଯେହ୍ନେ ଭୟଙ୍କର ଶାନ୍ତି ।
ବିଶୁନନା ଧକା ମାରେ କୋଣାର୍କର ଭଗ୍ନଶିଳା ପରେ,
ହାଇ ମାରେ ବିଷଣ୍ଣ ପ୍ରେତାତ୍ମାର ଛାଇ ।
ଶିଳ୍ପୀ ଆଜି ବିଷର୍ଣ୍ଣତାର ହିମଶୈଳଟିଏ
ଭଙ୍ଗା ଶିବିରର ପରାସ୍ତ ସୈନିକ ।
କିଏ ସେ ତରୁଣ ଶିଳ୍ପୀ !
ଅତନ୍ଦ୍ର ରଜନୀର ଶେଷଯାମେ ।
ମ୍ଳାନ ଦୀପ ଶିଖା ପାର୍ଶ୍ୱେ, ଆବକ୍ଷ ନାରୀ ମୂର୍ତ୍ତିଟିରେ
ଭରି ଦେଲା ଉଷାର ଅପୂର୍ବରାଗ,
ଛନ୍ଦାୟିତ ହେଲା ହଜିଯାଇଥିବା ସମସ୍ତ କଳ୍ପନା ।
ସେ ଯେ ଦେବଶିଶୁ ନିଜ ରକ୍ତର ।
ନାରୀର ପୂର୍ଣ୍ଣତା ଜନନୀରେ, ପ୍ରେୟସିରେ ନୁହେଁ
ସେ ଏକ ନୂତନ ସଂସ୍କରଣ ଧର୍ମପଦର ।

■■■

# ନେଲସନ ମାଣ୍ଡେଲା

-ଏକ-

ଝଡ଼ ପାଇଁ କିଏ ରାସ୍ତା ତିଆରେନା
ସେହିଁ ପାନ୍ଥ ସେହିଁ ପଥ ।
ଏ ଯେଉଁ ଝଡ଼ ଅପ୍ରତିହତ ଅବାରିତ
ବିପ୍ଲବର ଝଡ଼, ହତାଶିଆ ମଣିଷର ଅନ୍ତରର ଝଡ଼ ।

ହାଡ଼ଥରା ଜ୍ୱାଳାମୁଖୀର ଉଦ୍‌ଗୀରଣ
ଚିରି ଫିଙ୍ଗି ଦେଇଛି ଅତୀତର
ଇତିହାସର ଯେତେ ଜୀର୍ଣ୍ଣ ପୃଷ୍ଠା ସବୁ
ପରିବ୍ୟାପ୍ତ ସମସ୍ତ ଜଳ ସ୍ଥଳ ଓ ଆକାଶ ।

ସମୟ ତାର ଟିପା ଖାତା ନେଇ ଲେଖିଚାଲିଛି
ଗବେଷଣାରତ ନିବିଷ୍ଟ ଛାତ୍ରଟିଏ ପରି ।
କାରଣ ଇତିହାସ ପୁରୁଷର ସମୟ ନଥାଏ
ନିଜ ଇତିହାସ ଲେଖିବାକୁ ।
ତେଣୁ ସମୟତାର ସାଉଁଟି ଆଣିଛି
ଆବର୍ଜନା ସ୍ମୃତି ଭିତରୁ
ଅନାବିଷ୍କୃତ ତାଳ ପୋଥିର ଶବ୍ଦ ଲିପି ସବୁ ।
'ବାଷ୍ଟାଇଲ' ଦୁର୍ଗ କହେ ବିପ୍ଳବୀ ମଣିଷର କଥା
'ତିଆନମେନ ଛକ' ଆଉ 'ଜାଲିଆନାବାଗ' ଦେଇ
ପ୍ରିଟୋରିଆ ପରିଜନ୍ତେ ଇତିହାସର ଅମୁହାଁ
ସଫଳ ଗଳିରାସ୍ତା, ସାଇତି ରଖେ ଧାବମାନ
ମଣିଷର ରକ୍ତ ରଂଜିତ ପଦର ସ୍ୱାକ୍ଷର
ଚିହ୍ନା ଚିହ୍ନା ଲାଗେ ଇତିହାସ ପୁରୁଷଙ୍କ ସଂଗ୍ରାମର ସ୍ୱର ।
ଆଉ ସଂକେତ ଦିଏ ନୂତନ ଯୁଗର ।

—ଦୁଇ—

ନେଲସନ ମାଣ୍ଡେଲା !
ତୁମେ ଏକ ସ୍ୱର, ତୁମେ ଏକ ଯୁଗାନ୍ତର ବାର୍ତ୍ତା
ଶୋଷିତ ଶାସିତ ଏକ ଦୁର୍ଗତ ଜାତିର
ତୁମେ ଏକ ଆଗ୍ନେୟ ଅସ୍ତ୍ର

ତମିସ୍ରାଛନ୍ନ କଳା ମାନବର ।
କାରାଗାର ତୁମ ଜୀବନର ମୂକସାକ୍ଷୀ
ବର୍ଷ ବର୍ଷ ଧରି ଦୀର୍ଘତମ ତିନିଦଶନ୍ଧିର ।

ତୁମ ଜୀବନର ସମସ୍ତ ତାରୁଣ୍ୟ
ଆଶା ଓ ଆକାଂକ୍ଷା,
ତିଳତିଳ କରି ସମର୍ପିତ ଆହୂତି ଯଜ୍ଞରେ
ଦେଶ ପାଇଁ ଜାତି ପାଇଁ
ମୁକ୍ତିକାମୀ ସମସ୍ତ ଦଳିତଙ୍କ ପାଇଁ ।
ବର୍ଣ୍ଣ ବିଦ୍ୱେଷୀ ପ୍ରିଟୋରିଆ ଗୋରା ଶାସନର
ଗୋଳା ଓ ବାରୁଦ, ଲୌହ କାରାଗାର
ରଖିକି ପାରିଲା କେବେ ମୁକ୍ତିର ବନ୍ୟାକୁ
ସେ ଏକ ନୂତନ ସକାଳ ।

ମୁକ୍ତିର ମଳୟ
ଛୁଇଁ ଛୁଇଁ ଯାଏ କୋଣ ଅନୁକୋଣ
ଏକ ପ୍ରଶସ୍ତ ଆଶାର ଦିଗ୍‌ବଳୟ ତୁମେ
ନୂତନ ସୂର୍ଯ୍ୟର !

-ତିନି-

ଇତିହାସର ପୁନରାବୃତ୍ତି ହୁଏ,
ନୂତନ ପୃଷ୍ଠ ଯୋଡ଼ି ହୋଇଯାଏ
ଏକ ବିଂଶ ଶତାବ୍ଦୀର ଉଦୟ ରାଗରେ ।
ସତ୍ୟ ଓ ଅସତ୍ୟ, ହିଂସା ଓ ଅହିଂସା,
ପଶୁତ୍ୱର ପାଶବିକ ଓ ମାନବୀୟ ମମତ୍ୱବୋଧର
ଏ ଯେଉଁ ସଂଗ୍ରାମ ନୂତନ ମାନବ ବାଦର,

ଅହିଂସାର ଶଙ୍ଖଧ୍ୱନି ଶୁଭେ
ସୁଦୂର ଆଫ୍ରିକାର କଳାମାଟିରେ
ଏ ସ୍ୱର ଆମ ଅତି ପ୍ରିୟ,
ଅନୁରାଗର ସ୍ୱର
ସତ୍ୟ ଶିବ ସୁନ୍ଦରର ସ୍ୱର
ପ୍ରାଚ୍ୟଭୂମି ଆର୍ଯ୍ୟ ଭୂଖଣ୍ଡର ।

ସାବାସ୍ ମାଣ୍ଡେଲା
ମୁକ୍ତିର ମଶାଲ ତୁମେ
ଜଳୁଥାଅ, ଜଳୁଥାଅ ତୁମେ
ଯୁଗ ଯୁଗାନ୍ତର ।



# ଆମଯୋରୀ

ତୋ ଆଖିର ଅନେକ ଆଶା
କୁହଇ ନଈଟିଏ ହୋଇ ବହିଗଲା ପରେ
କଣ ବା ରହିଲା ଆଉ ?
ମଥାନ ଉପରେ ଚେନାଏ ଫାଙ୍କା ଆକାଶ
ଆମ୍ଭା ତୋର ବାଷ୍ପ ପିଣ୍ଡୁଳାଟେ
ମହାଶୂନ୍ୟରେ ଜଳେ ଦାଉ ଦାଉ ।

ସବୁ କିଛି ଆଶାର ଦୀପ ଲିଭିଗଲା ପରେ
ଗୋଟି ଗୋଟି ହୋଇ
କଣ ବା ରହିଲା ଆଉ,
ନୈରାଶ୍ୟର ଚୋରାବାଲି ପରେ
ମରୀଚିକା ପ୍ରବଞ୍ଚନା ଢେଉ ।

ପାଷାଣୀ ଅହଲ୍ୟାଟେ ତୁ
ଯୁଗେ ଯୁଗେ ରହିଥିବୁ ଚାହିଁ ପଥପ୍ରାନ୍ତେ
ମୁକ୍ତି ତୋର କେ କରିବ ଆଉ ?
ପ୍ରତୀକ୍ଷାର ସବୁ ଦ୍ୱାର ବନ୍ଦ ହେବା ପରେ
ଅନ୍ଧକାରେ ଗୋଟି ଗୋଟି ଦିନ ଗଣୁଥାଉ
ତୁ କି ସେ କିସା ଗୌତମୀ
ପୁତ୍ରହରା ମୁଗଧା ରମଣୀ
ମାୟାର ବନ୍ଧନେ ହୋଇ ଛଟପଟ
ଆଶ୍ରିତା ତୁ ମୋହ ବିସ୍ମାରିତ
ପ୍ରଭୁ ତଥାଗତ ।

ତୋ ପକ୍ଷ ଶୁଷ୍କ ଆଜି
ଗ୍ରାସିଅଛି ହା ଅନ୍ତର ମହାରାହୁ ।

ତୋ ଅନ୍ତରୁ ଭଙ୍ଗା ପଡ଼ି ଆସେ ବାତ୍ସଲ୍ୟ ମମତା
ପତି-ପତ୍ନୀ ସଂସାର-ନଉକା
ପିଲାବିକ୍ରୀ, ଯୁବତୀ କନ୍ୟାର ଦେହ କାରବାର
ତୋ ଭାଗ୍ୟର ବିଡ଼ମ୍ବନା, ଜୀବନ ନର୍କର ।
ତୋ ଜୀବନ ମାନଚିତ୍ର କେତେ ରୁକ୍ଷ, କେତେ ରୂପହୀନ
ଖୋଲି କି ଯାଏରେ କେବେ ଦୁନିଆର ଆଖି ?
ମନୁଷ୍ୟ ଜୀବନ ପୁଣି ଏତେ ହିନିମାନ !
ଝାଟି ମାଟି ତୋର ବାସସ୍ଥାନ
ଅସ୍ଥିସାର ସକଳ ସନ୍ତାନ
ଦେଶ ଦେଶାନ୍ତରେ କରେ ଖାଲି
ଖବର କାଗଜ ପୃଷ୍ଠାହିଁ ମଣ୍ଡନ ।

ତୋ ଦୁଃଖ ସରେନି କେବେ,
ଦେହାତୀତ ହୋଇଯାଏ,
ଦୁଃଖର ନଈଟିଏ ହୋଇ
ବିଶ୍ୱଦ୍ୱାରେ ନିଷ୍ଫଳ ସାନ୍ତ୍ୱନା
ଗୁହାରୀ ତୋ ଅରଣ୍ୟ ରୋଦନ,
ଚଉପାଶେ ଉଡ଼େ ଖାଲି ପ୍ରଶସ୍ତି
ଓ ପ୍ରଗତିର ବାନା
ଏ ସମସ୍ତ ଥାଟବାଟ, ଡାଳିପକା ରାସ୍ତାଘାଟ
ଭାଗ୍ୟରକି ନୁହେଁ ବିଡ଼ମ୍ବନା ?

■■■

*(କଳାହାଣ୍ଡିର ଏକ କ୍ଷୁଦ୍ର ଅବହେଳିତ ଗ୍ରାମ 'ଆମଯୋରୀ', ପ୍ରଧାନମନ୍ତ୍ରୀଙ୍କ ଗସ୍ତ ଉପଲକ୍ଷେ ରାତି ଅଧିଆ ଅନେକ ଉନ୍ନତିମୂଳକ କାମ କରାଯାଇ ଗ୍ରାମବାସୀଙ୍କୁ ସନ୍ତୁଷ୍ଟ କରାଯାଇଥିଲା । କିନ୍ତୁ ଗସ୍ତ ଶେଷପରେ......?)*

# ଏଲିଜି: ଦୁର୍ଘଟଣାଗ୍ରସ୍ତ ବିମାନର

-ଏକ-

ଜନ୍ମ ଓ ମୃତ୍ୟୁ !
ଜୀବନର ଦୁଇ ଦୁର୍ଘଟଣା
ସସୀମ ଓ ଅସୀମର
ଏକ ବୃତ୍ତର ଆଦ୍ୟ ଓ ପ୍ରାନ୍ତର
ଏକଇ ବିନ୍ଦୁ ।
ଏ ଦୁର୍ଘଟଣାର ଦୁଇ ସାକ୍ଷୀ ଆମେ
ତମେ ଓ ମୁଁ
ଆଦାମ୍ ଓ ଇଭ ।
ଦୁଇ ପକ୍ଷାଘାତ ପକ୍ଷୀ ଆମେ
ଏକ ନୂଆ ସକାଳର ।
ପ୍ରେମରେ ପଡ଼ିବା କଣ ଏକ ଦୁର୍ଘଟଣା
ପ୍ରକୃତି ଓ ପୁରୁଷର ?

-ଦୁଇ-

ଦେଖ !
ସମୁଦ୍ରର ନୀଳ ଛାତ ଉପରେ
ଲିଭି ଲିଭି ଆସୁଥିବା ବୁଢ଼ା ପେଟ୍ରୋମାସ ବତୀପରି
ଶେଷ ରାତ୍ରିର ଜହ୍ନଟି ଦିଶେ ପାଣ୍ଡୁର ବିବର୍ଣ୍ଣ ।
ଏ ରାତ୍ରିର ଜହ୍ନ ବି ଜଳିଯାଉ;
ସବୁ ଅତୀତ ଅଙ୍ଗାର ହେବ ଡାକୋଟା ବିମାନ ଓ
ଭସ୍ମିଭୂତ ସହଯାତ୍ରୀଙ୍କ ସମବେତ
ସାତ୍ତ୍ୱିକ ଚିତାରେ ।
ଆମେ କିନ୍ତୁ ରହିଯିବା
ଦୁର୍ଘଟଣାର ଅବକ୍ଷୟ ରୂପେ
ସମୁଦ୍ର ଏ ପାରେ ।
ତୁମ ମୁହଁର କଳାଦାଗ ସବୁ ପୋଛି ନିଅ
ଅମାନିଆ ଶୀତୁଆ ପବନର ପଣତରେ !
ସମୟର ମୁନିଆଁ ଦାନ୍ତରେ

ବଦଳି ଯାଇଥିବା ମୁହଁର ନକ୍ସାଟିକୁ
ସଜାଡ଼ି ନେବା ବାଲିଅନ୍ତା ଆଇନାରେ;
ରୂପ ଦେବା ଆମରି ରୁଚିରେ
କୁଙ୍କୁମର ଟୀକା ଆଉ ଗାରେ କଜଳରେ ।
ଶାଢ଼ି ଆଉ ବ୍ଲାଉଜର ଛିଣ୍ଡା ଅଂଶ,
ଅତୀତର ଯେତେ ସବୁ ଅଶ୍ଳୀଳ ଭଗ୍ନାଂଶ
ଚିରି ଫିଙ୍ଗିଦିଅ ସାମୁଦ୍ରିକ ବେତାଳ ହାଓ୍ୱାରେ,
ଆସ !
ମୁହଁ ହାତ ସବୁ ପଖାଳିନେବା
ସମୁଦ୍ର ପାଣିରେ ।
ତୁମ ଆମ ଆଖିର ଲୁହ ବି ଠିକ୍ ମିଶିଯିବ
କ୍ଷୀର ଓ ନୀର ପରି,
କେଉଁ ପରୀରାଇଜ-ରାଜକୁମାରୀର
ଅଶ୍ରୁର ଏ ଅସରନ୍ତି ଜଳଧିରେ ।
କାଳ ରାତ୍ରିର ଶେଷ ପରେ
ଫଗୁମଖା ସୁନ୍ଦର ସକାଳଟିଏ
ଖୋଜିବାରେ କେତେ ଦୂର ବାକି ?
କେତେ ବାଟ ଅବା,
ସେପାରି ନଦୀପଠାର ଝାଉଁବଣ
ପାହାଡ଼ ତଳିଆ ଅଳସିର ଖେତ
ଆଉ ନାଉରୀର ମନଛୁଆଁ
''ଭବପାରି'' ଗୀତ !
ଶୁଣ !
ଏଇତ ମସଜିଦର ଆଜାନ୍,
ମନ୍ଦିର ବେଢ଼ାରୁ ଶଙ୍ଖ ଆଳତୀ ଓ ଘଣ୍ଟନାଦ
ଗୀର୍ଜା ଚୂଡ଼ାରେ କ୍ରଶଟିଏ,
ତାପରେ ଦୁଇ କଜଳ ଦମ୍ପତୀ,
ହୁଏତ ନୂତନ ସୂର୍ଯ୍ୟ ଶିଶୁର
ବନ୍ଦନା ଚାଲିଛି, ଆସ !
ସାମିଲ ହୋଇଯିବା,
ସ୍ୱର ଆମ ମିଶାଇବା, ଗାୟତ୍ରୀ ଛନ୍ଦରେ
ଭୁଲିଯିବା ଆମ ଜାତି ଓ ଗୋତ୍ରର
ଜାତକ, ଠିକଣା ଆଉ ଏକ ନୂତନ ସୂର୍ଯ୍ୟକୁ
ତୁମ ଆମ କୋଳରେ ଭରିବା ଆଗାମୀ କାଳର ।



# ସନ୍ତ୍ରାସବାଦୀ

ତୋ ସାମ୍ନାର ଛାଇକୁ ଚାହିଁଦେଖ
ଦୁଲାଲ ସିଂ !
ସମୟର ଧୂମ୍ରୀଳ ଆରଶିରେ କେମିତି ଜମାଟ
ବାନ୍ଧି ଯାଉଛି ତୋ ଅଜଣା ରୂପ;
ଇତିହାସ ତାର ଲେଖିଚାଲିଛି
ମୃତ୍ୟୁ-କାଳୀନ ତୋ ଜମାନ ବନ୍ଦୀ ।
ତୋ ବହଳ ଶ୍ମଶ୍ରୁ ଓ ବାଘୁଆ ନିଶର ଛାଇରେ
ଲୁଚାଇ ପାରିବୁକି ତୋ ଅସଲ ସତ୍ତାକୁ ?
ବାଘ ଛାଲ ପିନ୍ଧି କେତେ ତୁ ନାଚିବୁ,
ଭେଳିକି ଲଗାଇ,
ସମାଜ ଆଖିରେ ଧୂଳି ଦେଇ
ଇତିହାସ ସୃଷ୍ଟି କରିବୁ
ନୀତିହୀନ ନୈତିକତାର ଇସ୍ତାହାର ନେଇ ।

ତୋ ପଛକୁ ଚାହିଁ ଦେଖ ଦୁଲାଲ ସିଂ
ଇହକାଳ ପରକାଳର ଦୀପଶିଖାଟିଏ,
କିମିତି ଦପ୍ ଦପ୍ ହେଉଛି,
ସଳିତାଟେ ସରକୁଛି ତୋହରି ରକ୍ତରେ
ତୋଳି ଧରିଛି,
ଆଞ୍ଜୁଳାଏ ତିଳ ତର୍ପଣ ତୋରି ପାଇଁ ।
ଦେଖି !
ରକ୍ତରେ ଜମାଟ ବନ୍ଧା ଖେଳନାଟିଏ
ନିଜର ଠିକଣା ମାଗୁଛି ଯୋଡ଼ହସ୍ତ ହୋଇ;
ଲେଖି ଦେ ତୋ ଅସଲ ଠିକଣା,
ସ୍ୱୀକୃତି ପାଇଁ
ଲେଖହୀନ ତା ଭାଗ୍ୟ ସିଲଟରେ ।

ମାଁର ପଣନ୍ତ କାନିରୁ ଉଙ୍କିମାରୁଥିବା
କୁନି କୁନି ପାଣିଚିଆ ପ୍ରଶ୍ନିଳ ଆଖିର
ସଠିକ ଜବାବ ପାଇଁ
ନିରୁତ୍ତର କିଆଁ ଦୁଲାଲ ସିଂ ?

ଫେରିଆ ଫେରିଆ
ଅକ୍ଷରର ଅସ୍ଥିର ସିଢ଼ିରୁ,
ଲମ୍ବିଯାଇଛି ଆଲୋକର ଏକ ଘନ ଉପତ୍ୟକା
ସର୍ପିଳ ଏକମୁହାଁ ରାସ୍ତା
କପିଳବାସ୍ତୁରୁ ଲୁମ୍ବିନୀ ଦିଗକୁ ।

ତୋ ହାତରେ ଏକ ମୃତ୍ୟୁର ଖେଳନା;
ଏକ ଭଙ୍ଗା ଖେଳନା ପଡ଼ିଛି ତୋ
ଭିଟାମାଟିର ଅଗଣାରେ
ସେ ଡାକୁଛି ତୋତେ କିଛି ବଂଚିବାର
ସ୍ୱପ୍ନ ନେଇ ।

ପାରିବୁ, ପାରିବୁ ଦୁଲାଲ ସିଂ
ଧୂଳି ମଳି ଝାଡ଼ି ଦେଇ ଫେରାଇ ଦେବାକୁ
ସେ ଅଝଟ ଶିଶୁଟି ହାତରେ
ତା ବର୍ତ୍ତମାନ ଓ ଭବିଷ୍ୟତର ପରିଚୟ ପତ୍ର ?
ତୋ ନିରାଶାର ପାହାଡ଼ ଶିଖରୁ
ଚାହିଁ ଦେଖ, ଅନ୍ଧକାରରେ କଏଦୀ ପରି
ତୋର ସେଇ ସଂସାର ଭିତରେ,
ଆଶାର ଦୀପଟିଏ ଜଳାଇ ବସିଛି
ତୋର ଆଗମନୀ ରାସ୍ତାରେ ନୟନ ବିଛାଇ
ଝର୍କା, କବାଟ ସବୁ ଖୋଲା,
ଦୁର୍ଦ୍ଦାନ୍ତ ଝଡ଼ଟିଏ ଦରଜା ଖୋଲି ବହିଯାଇଛି,
ହୁଏତ ଫେରିଆସିପାରେ ମଳୟଟେ ହୋଇ
ପ୍ରୀତିର ସୁସୁରି ବଜାଇ ।

ବାହାରର ଅନ୍ଧାର ଗଳିରେ
ଶୁଭୁଛି ଷ୍ଟେନ୍‌ଗନ୍‌ର ଆବାଜ
ବିସ୍ଫୋରଣ ଗୋଳା ଓ ବାରୁଦର ଗନ୍ଧ,
ତା ଭିତରେ ବି ଠିକ୍ ବାରି ହେଉଛି
କେତେ ନାରୀ ଓ ଶିଶୁର କ୍ରନ୍ଦନ:
ହୁଏତ ସେମାନେ ଶୋଇ ପଡୁଥିବେ,
ରକ୍ତ କଇଁ ହୋଇ,
ପରୀରାଇଜର କେଉଁ ନୀଳହ୍ରଦରେ ।

ବେଶ, ଆଜିର କଳାରାତ୍ରିର ଏକ ନୂତନ ପୃଷ୍ଠା
ଯୋଡ଼ି ହୋଇଗଲା । ତୁମ ଅଘୋଷିତ ସମ୍ବିଧାନରେ ।
ଏ ଇତିହାସକୁ ସ୍ୱୀକୃତି ଦେବ କିଏ ?
ଏ ଅପକର୍ମର ପ୍ରାୟଶ୍ଚିତ କରିବ କିଏ ?
ସନ୍ତ୍ରାସର ବାର୍ତ୍ତାବହ ତୁମେ,
ତୁମେ ସବୁ ସୈନିକ ଆହତ ଓ ଖଣ୍ଡିତ ବ୍ୟକ୍ତିତ୍ୱର
ତୁମେ ଯେତେ ଭୀରୁ, କାପୁରୁଷ ନର୍କର ଫଉଜ ।
ତୁମେ ସବୁ କାଳରାତ୍ରିର କଳାଛାଇ
ମୁଖାପିନ୍ଧା ସୌରାଚାରୀ
ସୈତାନର ସବାରୀ

■■■

# ଝଡ଼ର ଇଗଲ ଓ ଶାନ୍ତିର କପୋତ

ଲଂଘି ମୁହିଁ ଝଡ଼ ବିକ୍ଷୁବ୍ଧ ସାତୋଟି ସମୁଦ୍ର
ବିଦାରି ହିମଗିରିର ଶତେକ ବାଧା
ପ୍ରଲୁବ୍ଧ ବୋହି ମୁଁ ନୀଳହ୍ରଦ ରକ୍ତ ନଇର
ଉଦାତ୍ତ ଆହ୍ୱାନ,
ସବୁଜ ବନର ବୁକୁ ଚିରି
ମରୁଭୂମି ମରୀଚିକା, ଆଗ୍ନେୟ ଧାସରେ
ପକ୍ଷ ମୋର କରି ଚୂର୍ଣ୍ଣ
ଆସିଚି ମୁଁ ଏକ ପଥଶ୍ରାନ୍ତ ଝଡ଼ର ଇଗଲ

କପୋତୀ ଗୋ !
ଆଶ୍ରୟ ଦେବ କି ମୋତେ ?
ତମିସ୍ର ରଜନୀର ଅନ୍ତିମ ଯାମରେ
ଶ୍ରାନ୍ତ, କ୍ଳାନ୍ତ ମୁହିଁ ପଥହରା,
ନୀଡ଼ ମୋର ବହୁଦୂରେ ବହୁଦୂରେ
ସମୁଦ୍ର ସେପାରି,
ଠିକଣା ମୁଁ ରଖିନି ତାହାରି
ଚାହୁଁନି ମୁଁ ଅଶନ ବ୍ୟଶନ,
କିଂବା ତୁମ ଚିତ୍ରିତ ଡ଼େଣାରେ ଶିଳର ବ୍ୟଜନ
ଚାହୁଁ ନାହିଁ ତୁଳିତଳ୍ପ, କେବଳ ଚାହେଁ ମୁଁ
ମୋ ରକ୍ତାକ୍ତ ଡେଣା ଦୁଇଟିରେ
ବ୍ୟଥା ବ୍ୟାଣ୍ଡେଜ୍ !

ମୋ ଯାତ୍ରାର ଶେଷ ନୁହେଁ ଏଠି,
ମୁଁ ଏକ ଯାଯାବର ଭିନ୍ନ ଦେଶର ପକ୍ଷୀ,
ସଂଗ୍ରାମ ମୋର ଆଉରି ରହିଛି ବାକି ।

ନୀଡ଼ ତେଜି ଚାଲିଯିବି ମୁହିଁ,
ମୋର ଅବା ବିଶ୍ରାମ କାହିଁ ?

ତା ପୂର୍ବରୁ କପୋତୀ ଗୋ,
ତୁମ ଶାଣିତ ଚଂଚୁରେ,
ଶାଣ ଦେଇ ଦିଅ ମୋ ନଖ ଦନ୍ତରେ,
ଭରିଦିଅ ମୋ ଡ଼େଣାରେ ଶକ୍ତିର ସଂଚାର,
ମୋ ପକ୍ଷ ଆଘାତେ ନାଶ ହେବେ,
ଯେତେ ସବୁ ଦୁର୍ନୀତିର ଦୁର୍ଜୟ ବାହିନୀ
ହୁଏତ ଆସିବି ମୁଁ ଫେରି ମୋ ସଂଗ୍ରାମ ଅନ୍ତେ,
ଏହି ପଥେ
ଚାହିଁକି ପାରିବ ରହି ପଥ ମୋର ?

ଆଗୋ ! ଏକି କଥା କହ ତୁମେ
ପଥଶ୍ରାନ୍ତ ତୁମେ ନିଅଗୋ ବିଶ୍ରାମ ।
ତୁମ ପାଇଁ ଗଢ଼ିଦେବି ତୁଳୀ ତଳ୍ପ
ତୁମ ପାଇଁ ଗଢ଼ିଚି ମୋ ନଷ୍ଟ ନୀଡ଼ରେ
ସ୍ୱାଗତ ମୁରୁଜ,
ଭରି ଦେବି ଚଂଚୁରେ ତୁମ ସୁସ୍ୱାଦୁ ଅକ୍ଷତ
ଆଉ ମୋ ସ୍ୱରରେ ଭରିଦେବି ଜୀବନ ଯାତ୍ରାର
ମଂଗଳ ଗଜଲ ।
ଶାନ୍ତିର କପୋତ ମୁଁ,
ଶୁଣ, ଭାସି ଆସେ ଦୂରଦେଶୁଁ ଶାନ୍ତିର କୋରସ୍
ତୁମ ଯାତ୍ରା ହେଉ ଶୁଭଙ୍କରୀ
ଆସ, ଯାତ୍ରାର ମଙ୍ଗଳ ମୁହୂର୍ତ୍ତେ ।
ଗାଇବା ଦୁହେଁ ଏକ ସ୍ୱରେ
ମୁକ୍ତିର ମିଶାଲ ।

■■■

(ଆକାଶବାଣୀ ଜୟପୁର ସୌଜନ୍ୟରୁ)

# ବସନ୍ତ ବିଳାସ

ଯାତ୍ରାକୁ ବାହାରିଥିବା ଦୁଇ ଆଦିବାସୀ ଝିଅ ପରି
ଦେହେ ଭରି ବସନ୍ତର ସମସ୍ତ ନିର୍ଯ୍ୟାସ
ହେଇ ପୁଷ୍ପମୟୀ
ପଳାଶ-ଶିମୁଳି
ଆକାଶର ପାଣ୍ଡୁର କ୍ୟାନଭାସ ଦେହେ
ଏକ ସିଲହଟ ଛବି ।

ପାଖରେ ଚୂତ ଗଛ ଦିଗ ଚହଟୁଛି ।
ବସନ୍ତ ବାରତା ନେଇ ଗୁରୁ ଗୁରୁ ହଳଦୀ ବସନ୍ତ
ବାଟ ଭାଙ୍ଗି ଚାଲିଗଲା ସେଇବାଟେ ।
କହିଗଲା ଶିମୁଳି ଲୋ
ତୋ ଦେହେ ଅନେକ କଣ୍ଟା ।

ପଳାଶ ଲୋ !
ସହଜେତୁ ନିର୍ଗନ୍ଧା ଏବଂ କିଂଶୁକା'
ପଳାଶ ଶିମୁଳି ହେଲେ ରକ୍ତ ମୁଖୀ
ଏ ବଉଳ ସୁଗନ୍ଧା ଡାଆଁଣୀ ପାଇଁ
ଆମେ ଦୁହେଁ ହେଲେ ନିରିମାଖୀ ।
ହଳଦୀ ବସନ୍ତଟି ହଜିଗଲା ଆମ୍ବଗଛ ଡାଳେ ।

କୋଇଲି ରାବି କହିଗଲା ସେଇକଥା
ଦୁଇ ସଖିର କଷାୟିତ ଚକ୍ଷୁ,
ଅଧରେ ଅଧରେ ରକ୍ତର କ୍ଷରଣ,
ହୃଦୟେ ହୃଦୟେ ଖାଲି ବାସନ୍ତୀ ବେଦନା
ସୁନା ବାସନ୍ତୀ ସଂଯଟି
ତାଂକ ପାଇଁ ହେଲା ସିନା ଚୂନା ।

ତୁଢ ଗଛଟି ଦୋହଲୁଛି
ବସନ୍ତର ମଳୟ ହିଲ୍ଲୋଳେ
ହଳଦୀ ବସନ୍ତ ଓ କୋଇଲି ତାର ଦୁଇ ଡାଳେ
ହେଲେ ଚାହାଁ ଚୁହିଁ,
କୋଇଲି ବାଇଲା ବେଣୁ,
ରାଧା ରାଣୀ ପଦ ରୁଣୁଝୁଣୁ
ହଳଦୀ ବସନ୍ତ ନେଲା ରାଧାରାଣୀ ବେଶ
ଆକାହ୍ନୁ !
ତୋର ମୋର ଆରମ୍ଭିବା
ବସନ୍ତ ବିଳାସ ।



# ବଗିଚାର ମାଳି, ପ୍ରଜାପତି ଓ ଫୁଲଟିଏ

ବଗିଚାର ଏକ ନିସଙ୍ଗ ଇଲାକାରେ
ମାଳି ବୁଢ଼ାଟି ସ୍ମୃତିର କୋଷରୁ
ସଜାଡୁଥିଲା ଛିଣ୍ଡି ଯାଇଥିବା
(ତାର) ମନ ବୁଢ଼ିଆଣି ଜାଲ ।

ଚିତ୍ରିତ ପ୍ରଜାପତିଟିଏ
ତା ଡେଣାରେ ଧକ୍କା ଦେଇ
ଶିଶିରର ଶେଷ ପ୍ରହରକୁ
ମଳୟର ତାଳେ ତାଳେ ନାଚି ନାଚି
ଉଡ଼ିଗଲା ତା ଇପ୍‌ସିତ ଦପ୍ତରକୁ ।

ଫୁଲଟିଏ ବରିଗଲା
ଅଭିସାର ଆରମ୍ଭିଲା, ଚୁପଚାପ
ହଁ ନାଁ ରାଗ ରଷା
'ସାରିଗାମା ପାଧାନିସା'
ମାଳି ଶେଷେ ସବୁ ବୁଝିଗଲା ।
ଏ ପରକୀୟା ପ୍ରଜାପତି
ଫୁଲବନ ତାର ଉଜାଡ଼ିଲା ।

ପ୍ରଜାପତି ବିନତୀ ନେହୁରା ହୋଇ
ତା ଗାଲରେ ଚୁମାଟିଏ ବକ୍‌ସିସ ଦେଇ
ତା ରାସ୍ତାରେ ସିଏ ଉଡ଼ିଗଲା ।
ବିଦଗ୍ଧ ବଗିଚାଟି ଝୁରୁଥିଲା
କଳିକାଟି ଲୁହ.ଢ଼ାଳୁ ଥିଲା
ମାଳି ବୁଢ଼ାଟି ହସୁଥିଲା
ଆତ୍ମ ପ୍ରସାଦରେ



# କାହାକୁ ନେଇ ଲେଖିବି କବିତା

## ଏକ

କାହାକୁ ନେଇ ଆଉ ଲେଖିବି କବିତା ?
ବରଣ କଲି ମୁଁ ଆକାଶକୁ, ତାରାଙ୍କୁ, ଜହ୍ନକୁ ।
ଜହ୍ନତ ଆସିଲା ନାହିଁ ଦିନଟିଏ ହେଲେ
ମୋ କାହ୍ନୁ ହାତକୁ ବେଲୁନଟିଏ ହେଇ
କିମ୍ବା ଫାଳେ ରୁଟି ହେଇ
ଗରମ ତାଓ୍ବା ପରି ଚାହିଁ ଥିବା
ଭୋକିଲା ଶିଶୁର ପେଟକୁ ।

ଗୋଲ ଜହ୍ନଟି ସରି ସରି ଆସେ
ଶିଶୁ କାହାଣୀର ମାଂକଡ଼ ହାତରେ
ଦ୍ୱିତୀୟା ଜହ୍ନଟି ଝୁଲି ରହେ ଦା'ଟିଏ ହୋଇ
କେଉଁ ପାହାଡ଼ି କନ୍ୟାର ମୁକ୍ତ କବରିରେ
କାଟି କାଟି ମୁକ୍ତାର ଫସଲ ।
ତାରାମାନେ ଆସିଲେ ନାହିଁ କେବେହେଲେ
କୃଷକର ଟାଙ୍ଗରା ଭୂଇଁକୁ
ଗହମ ଶିଶାର ଦାନାଟିଏ ହେଇ ।

## ଦୁଇ

କାହାକୁ ନେଇ ଆଉ ଲେଖିବି କବିତା ?
ମୁଁ ବରଣ କଲି ସମୁଦ୍ରକୁ ।
ନିରୋଳାରେ ଚୁପ୍‌ଚାପ ତା ବେଳାଭୂଇଁରେ
ମୋ ଅଭିଯୋଗର ବାକ୍ସଟିଏ ପଖାଳି
ପେଶ୍ କଲି ସମସ୍ତ ଦଲିଲ
ଅଭିଯୋଗ ପ୍ରକୋଷ୍ଠ ବାହାରେ
ଧାଡ଼ି ବାନ୍ଧିଥିବା ନି ସହାୟ ଆସାମୀଟି ପରି
ସେ କିଛି କୁହାଇ ଦେଲାନି ମୋତେ,

ମୋ ଶବ୍ଦମାନେ ଛଟପଟ ହେଲେ ବାଲିଅନ୍ତାପରେ
ଶାମୁକା ଓ କଂକଡ଼ାଙ୍କ କଂକାଳ ମେଳରେ ।

ସମୁଦ୍ର !
ଅଝଟିଆ ଲଙ୍ଗଳା ଶିଶୁଟେ
ଖାଲି ପେଶ୍ କରେ ଫର୍ଦ୍ଦ, ଫର୍ଦ୍ଦ ଦାବୀର ତାଲିକା
ହାତୀ ଦେ, ଘୋଡ଼ା ଦେ
ଗୋଟା ମିନାବଜାର ଦେ ମୋ ହାତକୁ ।

ମୁଁ ସମର୍ପି ଦେଲି ମୋ ନିଜକୁ
ଦଦରା ନାବଟି ସଜାଡ଼ି ରମାନା ହେଲି
କୁହାଳିଆ ସମୁଦ୍ରର ପେଟ ଭିତରକୁ
ମାପିବାକୁ ଗଭୀରତା
ଆନ୍ତରିକତାର ମାପକାଠି ନେଇ ।

ଅଯାଚିତ ଅତିଥିପରି ବାଧା ଦେଲା ମୋତେ
ତା ନିଷିଦ୍ଧ ଇଲାକା ବାହାରେ,
ଗୁପ୍ତଚର ହେଇ କାଳେ ଲୁଟି ନେବି
ସମସ୍ତ ରହସ୍ୟ
ସିନ୍ଦବାଦ ନାବିକଟି ପରି, ତା ରତ୍ନ ଭଣ୍ଡାର
ମୋ ହାତୁ ଛଡ଼ାଇ ନେଲା ମୋ ଆହ୍ଲା ।
ତା ଅନ୍ନ ପାଳିତ ଝନ୍‌ଜା ଓ ଝଟିକା
ତା ଫେନିଳ ସର୍ପିଳ ଫେଣାରେ
ମୋ ନାଆଟି ହେଲା ଛାରଖାର
ମୁଁ ପାଲଟିଲି ଅବକ୍ଷୟ ମାତ୍ର
ତା ଲେଖାଗାରର ସାତତାଳ
ନିଭୃତ ନୀଳ ବଖରାରେ ।

## ତିନି

କାହାକୁ ନେଇ ଆଉ ଲେଖିବି କବିତା ?
ମୁଁ ବରଣ କଲି ଧରିତ୍ରୀକୁ ।
ମୋ ଏକାନ୍ତ ସଂପର୍କ ମାଟିକୁ
ଯା ପିଠିରେ ପାଦ ରଖି ହାତ ମୋର ବଢ଼ାଇଛି
ଇଚ୍ଛାରେ ସ୍ୱର୍ଗକୁ ।
ଇଚ୍ଛାରତ ଅନେକ ନହକା ଡାଳ
ମୂଳ ତାର ପାତାଳକୁ ନା ଗହୀର ନର୍କକୁ ?

ମୁଁ କହିଲି କୋଇଲିକୁ
ମାନଧାତା ଅମଳର ପୁରୁଣା ଗୀତଟା
କେତେ ତୁ ଗାଇବୁ
କଳ ଗାଉଣାର ଘଷଣା ରେକଡ଼ଟିଏ ପରି,
ଖୋଜିପାରିଲୁନି ପାଞ୍ଚଟିରୁ ଭିନ୍ନ ଅନ୍ୟ ଏକ ସ୍ୱର ।

ଶତାବ୍ଦୀର ପୁନର୍ଜନ୍ମ ପରେ?
ତୋ ସ୍ୱରରେ ଆଉ ବେପଥୁ ଜାଗେନି
କେଶବତୀ କନ୍ୟାର ଦେହରେ ।
ନିଦାଘ ଆସୁଛି ମାଡ଼ି, ଗୀତଟିଏ ଗାଇ ଦେ
ବସନ୍ତର ଶେଷ ପ୍ରହରରେ,
ବନ୍ଧ୍ୟାଗଛମାନେ ହେବେ ପୁଷ୍ପବତୀ
ଲକ୍ଷ୍ୟହରା ପଥିକର ସେୟା ହେବ ଜୀବନ ସଙ୍ଗୀତ,
ନୀତିହୀନ ସଂତ୍ରାସବାଦୀଙ୍କ, ବାରୁଦ ବିଛା
ସବୁଜ ଉପତ୍ୟାକା
ଲଂଘିବା ପୂର୍ବରୁ ।

## ଚାରି

କିଏ ଜଣେ ନିର୍ଭିକ ମଣିଷଟିଏ ହାତଠାରି କହିଲା ।
ଚାହିଁଚୁ କଣ ?
ଆକାଶକୁ !
ସମୁଦ୍ରକୁ !!
ଶାପଗ୍ରସ୍ତ ଧରିତ୍ରୀକୁ !!!
ଖର୍ବକାୟ ଚାଖଣ୍ଡେ ଲୁଣର ପିଣ୍ଡୁଳାଟେ ତୁ
ଛୁଇଁ କି ପାରିବୁ ଚକ୍ରବାଳ ପାରି ହୋଇ
ଲୁଣିଆ ସମୁଦ୍ର
ଭଲ କରି ଚାହିଁଦେଖ ବନ୍ଦ ଦରଜା ଖୋଲି,
ତୋ ହୃଦୟ ଅଳିନ୍ଦର ମୁଠାଏ ଅନ୍ଧାର ଭିତରେ
କେତେ ସୂର୍ଯ୍ୟ, କେତେ ସମୁଦ୍ର
ମାଳ ମାଳ ବ୍ରହ୍ମାଣ୍ଡ; ଆଁ କରି ଦେଖେଇଦେ
ଅଝଟ ଶିଶୁଟେ ହୋଇ,
କେତେ ଦିନ ଶୋଇଥିବୁ ଅନନ୍ତ ଶଯ୍ୟାରେ
ଅଶାନ୍ତିର କ୍ଷୀର ସମୁଦ୍ରରେ ।



# ପରିଚୟ

ସେ ଏକ ମୁଠାଏ ଆକାଶ ।
ତାର ସ୍ଥିତି ଓ ତାର ପରିଚୟ
ଗୋତ୍ର ବା ଜାତକ,
ତା ଅତୀତ ଅବା ଭବିଷ୍ୟତ ?
ସଂଜ୍ଞାହୀନ ଅବର୍ତ୍ତମାନର ଏକ ଚଳମାନ ବିନ୍ଦୁ ।
"ମୋର ସ୍ଥିତି ଏଠି ନୁହେଁ
ନୁହେଁ ବି କେଉଁଠି ।
ତେଣୁ ମୋ ଜୀବନ
ଏକ ନିଚ୍ଛକ ନିସଂଗତା
ମୋ ଜୀବନ ମୋ ପାଇଁ
ଏକ ଅନ୍ତରଂଗ ବ୍ୟାଧି"
ଏ ଧରିତ୍ରୀ ଅନନ୍ତ ଅନ୍ତରୀକ୍ଷ
ଭୂମାର ଶୂନ୍ୟତା ଭିତରେ
ଟେଲାଏ ମାଟିର ମନ୍ତ୍ରପୂତ ନଟୁଟିଏ
ଘୂରେ ଖାଲି ଘିରି ଘିରି
ଡାହାଣୀ ଲଗା ନାରୀର ଛାଇ
ନୃତ୍ୟପରି ।
ତଥାପି ମାୟା ଜାଗେ
କାଶତଣ୍ଡୀ ଫୁଲଭରା ସର୍ପିଳ ନଈପଠା
ଆଉ ଘୂମନ୍ତ କେଉଁ ଏକ ଗହମ ଖେତର
ମନଭୁଲା ନିଦୁଆ ଲୋରୀ ।
ଟିକି ଟିକି କୋମଳ ଘାସର ସବୁଜ ମୁରୁଜ;
ମାଆ କୋଳ ପରି ପ୍ରୀତି ଓ ପତିଆରାର
ବାଲି ଶେଯ ପାଇଁ
ସେ ହେଉ ଶରଧା ବାଲି,
ସ୍ୱର୍ଗଦ୍ୱାର ଅବା
ଗାଁ ମାଟି ଦାଣ୍ଡ ।

ଜୀବନ, ଉଡ଼ନ୍ତା ଶଙ୍ଖଚିଲ ଟିଏ
ମନ ଯାର ମାପିଗଲେ ଅସରନ୍ତି
ନୀଳ ଆକାଶ ।
ଛାଇ ତାର ଛୁଇଁ ଛୁଇଁ ଯାଏ,
ସାରି ସାରି ସବୁଜ ଖେତ,
ନୀଳ ପଦ୍ମ ମହକିତ ନୀଳହ୍ରଦ
ଓ ସବୁଜ ବନାନୀ ।
ଜୀବନଟି ତାର ଏକ କଳାଛାଇ,
ଏକ ମୁହୂର୍ତ୍ତର
ନୀଳ ସ୍ୱପ୍ନର
ସମୟ ଓ ସମୟାନ୍ତରର ।

■■■

# କାଶ୍ମୀର

ସୁଶ୍ରୀ ନାରୀଟିଏ
ସ୍ନାନ ସାରି ଝେଲମ୍ ନଦୀରେ
ଆଞ୍ଜୁଳାଏ ଜଳ ତୋଳି ତୃଷାର୍ତ୍ତ ନୟନେ
ଚାହିଁ ରହେ ଦେବାତ୍ମା ହିମାଳୟେ
ତୁଙ୍ଗ ତୁଷାରିତ ଧବଳ ଶିଖରେ ।
ଆଖିରେ ତା ଅନେକ ପ୍ରଶ୍ନ ଆଶା ଓ ଆଶଂକାର
କୁଞ୍ଚିତ କପାଳରେ ସ୍ୱାଭିମାନ
ଅଙ୍ଗୀକାରର ଓଜନିଆ ପୋଷାଏ ବାଦଲ ।

କ'ଣ ସେ ମନାସେ କେଜାଣି ?
କା'କୁ କିଛି କୁହେନି
କିଏ କି ନେଇଛି ତାର ପରିଚୟ ?
ଚିହ୍ନା ଚିହ୍ନା ପରି ମୁହଁ,
କେବେ କାଶ୍ମୀରର ପାଇନ୍ ଓ ଏପ୍ଲରର ଖେତେ,
କୃଷକର ଧାନବିଲ, ମହୋଦଧି ତୀର,
କେବେ ପୁଣି ସହର ତଳିର ଝୁଗି ବସ୍ତିରେ
ନାନା ବେଶେ ଭିନ୍ନ ଭୂମିକାରେ ।
ହୁଏତ ସହୋଦରୀ ଅବା ସଖି
ଭାରତ ମାତାର !

ଶୁଚିସ୍ନାତା, ଶୁକ୍ଳବସ୍ତ୍ରା ଗଭାରେ ଚମକେ
ପ୍ରଭାତୀ ତାରାର ଶୁକ୍ଳ କରବୀ ସ୍ତବକ,
ଶୁଭ୍ରପାଦରେ ତା ବୋଳିଦିଏ ଅଳତାର ଗାର
ବାଳ ସୂର୍ଯ୍ୟ ପ୍ରଥମ ରଶ୍ମିର ।
ନୀତି ସେ ଫେରେ ଏକଇ ରାସ୍ତାରେ
ଯେଉଁ ରାସ୍ତାରେ ଗୀର୍ଜା, ମନ୍ଦିର

ମସଜିଦ୍ ଓ ଗୁରୁଦ୍ୱାର
ନରମ ପାଦଟି ତାର ଅଟକିଯାଏ
ଆଜାନ୍ ଓ ଗୁରୁବାଣୀର ପବିତ୍ର ମଙ୍ଗଳ ଗାନରେ ।
ରାସ୍ତାଟି କିନ୍ତୁ ଶୁନ୍ ଶାନ୍
ଶ୍ମଶାନର ଅସହନୀୟ ନୀରବତା ।
ବୁଲା ଶ୍ୱାନର କରୁଣ ଚିତ୍କାର
ମିଲିଟାରୀ ବୁଟର ଓଜନିଆ ଆବାଜ୍,
ଷ୍ଟେନଗନରୁ ବର୍ଷିଯାଏ ଅବିଶ୍ରାନ୍ତ ଗୁଳି ।

ସମସ୍ତ ଧର୍ମପୀଠ ଛାଇଯାଏ ବାରୁଦ ଗନ୍ଧରେ
ସନ୍ତ୍ରାସବାଦୀଙ୍କ ରାଜତ୍ୱ ଚାଲେ ତମାମ୍ ସହରେ ।
କଞ୍ଚା ମଣିଷ ମାଂସର ପୋଡ଼ା ଗନ୍ଧ,
ସହରର ଛାତି ଚିରିହୁଏ ସାଇରନ୍ ଶବ୍ଦରେ ।

ବିଷ ଧୂଆଁର ବାଦଲ ଭିତରୁ
ପୁଣି ସେଇ ଶୁଭ୍ରାଙ୍ଗିନୀ ନାରୀ ମୂର୍ତ୍ତିଟି
ଅବିଚଳିତ ଭାବେ ଆଗେଇ ଚାଲିଛି
ରକ୍ତ ରଂଜିତ ପାଦ ଚିହ୍ନ ତାର,
ମୁଦ୍ରିତ ହୁଏ ଇତିହାସର ଅମର ପୃଷ୍ଠାରେ ।
ତାର ଶୁଭ୍ର ପୁଷ୍ପଗୁଚ୍ଛ ଖସିପଡ଼େ ଶବ୍ଦରେ ଧକ୍କାରେ
ତାଜା ରକ୍ତର ସୀମିତ ହ୍ରଦରେ ।
ସାଦରେ ସାଉଁଟି ନେଇ, ପୋଛିଦିଏ ଶୁଭ୍ର ପଣନ୍ତରେ
କୋମଳ ପାଖୁଡ଼ା ଝଡ଼ି ପଡ଼େ, ଗୋଟି ଗୋଟି ହୋଇ ।

ଦରବିକଶିତ କଢ଼ିମାନେ ଚାହିଁ ଛନ୍ତି
ନିସହାୟ ଚେଉଣ୍ଡ ରୂପେ,
ତାଜା ରକ୍ତ ସ୍ରୋତର କବର ଭିତରୁ
ମାର ସ୍ନେହଭରା ତଡ଼ିତ୍ ସ୍ପର୍ଶରେ ।
ତଥାପି, ସେ ଆଗେଇ ଚାଲିଛି,
ସମସ୍ତ ଆଗ୍ନେୟ ବଳୟ ଭେଦି,
ଦୃପ୍ତ ଠାଣିରେ, ବୋମା, ବାରୁଦର
ବାଧା ନ ମାନି, ନିର୍ବାସିତା ସୀତାପରି
ଦେବାକୁ ଅନ୍ତିମ ଅଗ୍ନି ପରୀକ୍ଷା ଆଗାମୀ ଦିନର ।

■■■

# ପଂଜିକାର

ଗାଁର ଏକ ମୁଣ୍ଡେ ଏକଲା ବରଗଛଟିଏ
ପ୍ରାଣୀଙ୍କ ଭଲ ମନ୍ଦ, ଜନ୍ମ ଓ ମୃତ୍ୟୁର ମୂକସାକ୍ଷୀ ସିଏ ।
କିଏ ତ ପାରନ୍ତିନି କହି ।
ନା ଗାଆଁ
ନା ଶ୍ମଶାନ
ନା ବରଗଛ,
କିଏ ଆଗ କିଏ ଅବା ପଛ
ବରଗଛର ପ୍ରସାରିତ ଶାଖା,
ଦିଏ ମମତା ଓ ସମତାର ବାର୍ତ୍ତା
ସଂପର୍କର ଓହଳ ସବୁ ଛାଡ଼ିତ ପାରେନା ମାଟିର ମମତା ।

ବରଗଛ ଶ୍ମଶାନ ଓ ଗ୍ରାମ
ଏକ ଜୀବନ ତ୍ରିଭୁଜ
ଜନ୍ମ ବୃଦ୍ଧି ଓ ମୁକ୍ତିର ।

ଖେତ ଖଳାର ଆବଶ୍ୟକତା ପରି
ଶ୍ମଶାନପୀଠବିତ ଏକ ଅନିବାର୍ଯ୍ୟ ଆବଶ୍ୟକତା
ସୃଷ୍ଟିର ପୁଷ୍ଟି ପାଇଁ
ଶ୍ମଶାନରେ ଆବାଦୀ ହୁଏ
ଯେତେ ସବୁ ଶବର ଫସଲ ।
ବଞ୍ଚିବା ଭିତରେ ନିଜର ବୋଲି ଜାଗା ଖଣ୍ଡେ
ନଥିଲେ ବି ଚଳିବ,
ଅଛି ବରଗଛ ଛାଇ, ପ୍ଲାଟଫର୍ମ
ବଡ଼ଦାଣ୍ଡ ଅବା ବତ୍ରିଶ ପାବଛ,
କିନ୍ତୁ ମୃତ୍ୟୁ ପରେ,
ବରଗଛ ଓହଳରେ ଝୁଲିଝୁଲି

କେତେକାଳ ଅବା,
ନିଜ ହଜିଲା ସଂସାରର ଗୋଟି ଗଡୁଥିବ ?
ତେଣୁ ଜୀବନ କାଳରେ ମୁଣ୍ଡ ଗୁଞ୍ଜିବାକୁ
ଜାଗା ଖଣ୍ଡେ ନାହିଁ ବୋଲି
ଚିନ୍ତା କରିବାରେ ମାନେ କିଛି ନାହିଁ ।

ମୃତ୍ୟୁ ପରେ ଅବଶ୍ୟ ମିଳିବ ।
ବରଗଛ ଛାଇ ସଂଚରି ଯାଏ,
ଉଦୟ ରାଗରେ ଶ୍ମଶାନର ଦୂରକୁ ଦୂରକୁ
ବଂଚିବା ଓ ବଢ଼ିବାର ଦ୍ୟୋତନା ଜଗାଏ
ଅପରାହ୍ନ ସୂର୍ଯ୍ୟ କିନ୍ତୁ ଫେରାଇ ଦିଏ
ବରଗଛ ଛାଇକୁ, ଜୀବନକୁ
ପ୍ରତ୍ୟେକ ପ୍ରାଣୀର ଅନ୍ତିମ ସ୍ଥଳକୁ- ଶ୍ମଶାନକୁ
ବରଗଛ ଏକ ପଂଜିକାର, ଜୀବନଟା ସାରା ଖାଲି ଲେଖି ଚାଲିଅଛି
ଜୀବନ-ଜ୍ୟାମିତିର ଲେଖଚିତ୍ର
ଅବୁଝା ଗଣିତ ସେଇ ଗ୍ରାମଟିର ।

■■■

# ରାତ୍ରିର ନକ୍ସା

ରାତ୍ରି !
ସେ ଏକ ଅସୂର୍ଯ୍ୟ ଉପନିବେଶର ତିମିର ପ୍ଲାବନ ।
କେଉଁ ଏକ ଆଦିମ ଇଗଲର କୁତ୍ସିତ ଡେଣା
ନେସି ଦେଇଗଲା ସାରି ସାରି ଅନ୍ଧାର ପ୍ରଲେପ
ଆଲୋକର ବର୍ଣ୍ଣାଢ୍ୟ ବିଭାରେ
ଶକ୍ତିଧରର ଅବର୍ତ୍ତମାନରେ ।

ସୂର୍ଯ୍ୟ ଏଠି ନିର୍ବାସିତ
ନିର୍ବାସିତ ଯେତେସବୁ
ଆଲୋକର ଅଗ୍ରଦୂତମାନେ ।
ସପ୍ତ ଅଶ୍ୱ ମୂହ୍ୟମାନ, ଉଦ୍‌ଭ୍ରାନ୍ତ
କାମର ଜ୍ୱାଳାରେ ।
ଇନ୍ଦ୍ରଧନୁର ସପ୍ତରଂଗ
ଗୋଳି ହେଇଯାଏ ଅମାରାତ୍ରିର
ନୀଳ ଇଲାକାରେ ।
ନିଦ୍ରାଗ୍ରସ୍ତ ଜୀବନର କୋମଳ ମନ
ତନ୍ଦ୍ରାଚ୍ଛାଦିତ ବିକୃତ ଚେତନା
ଶିରାରେ ଶିରାରେ ଝଂକାର ରଚେ
ରାଗ ଭୈରବୀର ତାଳେ

ମନୁଷ୍ୟ ହୁଏ  ଏକ ପାଲଟା ବାଘ
ତିମିର ତୃଷ୍ଣାରେ ହୁଏ ରକ୍ତମୁଖା
ପ୍ରପଞ୍ଚ ରାତ୍ରିର ତୃତୀୟ ପ୍ରହରେ ।
ରାଜରାସ୍ତା ଶୂନ୍‌ଶାନ୍ ।

ଯେତେ ସବୁ ବିବେକୀ ପ୍ରହରୀ,
ତନ୍ଦ୍ରାୟିତ, ତମାମ ଦରବାରର
ମଶାଲ ନିଭାଇ,
କେଉଁ ଏକ ଅଜ୍ଞାତ ଗଳିରେ
ରିକ୍ସାବାଲା ଅବା ପାଗଳ ମଦ୍ୟପ,
ଅନ୍ଧୁଣୀ ଟୋକିର ଏକମାତ୍ର ଛିଣ୍ଡା ଶାଢ଼ୀ
ଖିନ୍ ଭିନ୍ କରେ ।

ପାଖ କେଉଁ ଗଛ କୋରଡରୁ
ପେଚାଟି କୁହାଟ ମାରେ ଶୀକାର ଦର୍ଦ୍ଧାରେ ।
ଆଲୁଅରେ ବହୁରୂପୀ ବୋଲାଉଥିବା,
ନାରୀ ମୂର୍ତ୍ତିଟି ବୁର୍ଖାର ପରଦା ଉହାଡ଼େ
ସହରର ତମାମ୍ ଗଳିରେ ବିଷମଂଜି ବୁଣିବୁଣି ଯାଏ ।
ସବୁକିଛି ରୂପରଂଗ କର ନେଉଟାଏ
ଆଲୋକ ଅନ୍ଧାରେ ।
ଯେତେବେଳେ ଦିନର ଠିକଣା ହଜେ ରାତିର ନକ୍ସାରେ ।

■■■

ଜୁନାଗଡ଼
ତା ୫.୮.୯୫ ଶନିବାର

# ବର୍ଷା

ବର୍ଷା !
ଏଠି ଖାଲି ତୁମରି ରାଜତ୍ୱ
ମୌସୁମୀର ତରଳ ସଂଚାର,
ବାହାରେ ଭିତରେ
ଆକାଶରେ, କାନ୍ତାର ମରୁରେ
ରିମ୍‌ଝିମ୍ ନୃତ୍ୟର ସିମ୍ଫୋନି ।

ଶିଳ୍ପୀ ତୁମେ !
ଆଦ୍ୟ ଶ୍ରାବଣର ଚାମର ସ୍ପର୍ଶରେ
ଲେଖି ଦେଇଯାଅ ପାହାଡ଼ ଦେହରେ
ଛାଏଁ ଛାଏଁ କଳ୍ପନାର ସବୁଜ ମୁରୁଜ
କୁହୁକିନୀ ତୁମେ ! କୁହୁକ ମନ୍ତ୍ରରେ
ନଦୀପଠା ଶିହରି ଉଠେ
କାଶତଣ୍ଡୀ ବଧୂର ହସରେ,
ଶୂନ୍ୟଗର୍ଭା ନଦୀ ଫୁଲି ଉଠେ
କୁଆଁରୀ କନ୍ୟାର ସ୍ତନପରି
ମାତୃତ୍ୱ ପରଶେ ।

ବର୍ଷା ତୁମେ ! ଛୁଇଁ ଯାଅ ଓଠରେ ଓଠରେ
ଅମୃତର ଉଚ୍ଛଳ ପିଆଲା,
ନାରୀ ତୁମେ !
ଭରିଦିଅ ଅନ୍ତରେ ବାହାରେ
ଶୂନ୍ୟ-ଜୀବନ-ପାତ୍ରରେ
ସଂଜୀବନୀ -ସ୍ୱର୍ଣ୍ଣିମ-ମଦିରା ।



ମାଛକୁଣ୍ଡ, ଜି. କୋରାପୁଟ,

# ସୁଅ

ସମୟ ସୁଅରେ ଭାସିଚାଲେ
ଏ ପୃଥିବୀ, ସୂର୍ଯ୍ୟ ଓ ତମାମ୍ ତାରାର ସହର
କେଉଁ ଏକ ନିର୍ଦ୍ଧାରିତ ବନ୍ଦର ମୁହଁକୁ ।
ଯାତ୍ରାରୁ ଫେରୁଥିବା
ଏକ ଶିଶୁ ହାତରୁ ଖସି,
କେନାଲ ସ୍ରୋତରେ
ନିଜ ଠିକଣା ପଚାରୁଥିବା
ନିଃସହାୟ ଫମ୍ପା ବେଲୁନ୍‌ଟିଏ ପରି ।
କିଏ କହିବ ବେଲୁନଟି ଏ କୂଳ ନା ଆର କୂଳର ?
ନା ଫେରି ଆସିବ ପୁନଶ୍ଚ ଶିଶୁର ହାତକୁ
ପଥହରା କଲମ୍ବସ ପରି
ପୁନଶ୍ଚ ଘୂର୍ଣ୍ଣିର ସେଇ ଆବର୍ତ୍ତକୁ ।
ପବନ ସୁଅ ଅଛି,
ଅଛି ବି ବଳର
ଏ ସୁଅର ପ୍ରତିକୂଳେ
ଚାଲେ ଏକ ସୁଅ
ଅବିରତ, ଅନାହତ
ସେ ମନର ସୁଅ,
ଏ ମନ ସୁଅର ଦୁଇକୂଳ,
ଇଗଲର ଦୁଇ ଡ଼େଣା, ଆଶା ଓ କାମନା,

ସକାଳ କୁହୁଡ଼ି ପରି ଘନାବୃତ
ଅନନ୍ତ ମୋ ଆଶାର ଆକାଶ,
କାମନାର ଇନ୍ଦ୍ରଧନୁ ଶତେକ ରଂଗର
ନିତି ଦେଖାଦିଏ ପ୍ରାଚୀ ଓ ପ୍ରଭ ଲଲାଟେ
ରାମାନନ୍ଦୀ ଚିତା ପରି ଶୁଭ୍ରଭାଲ ପଟେ
କାନ୍ୟକୁବ୍‌ଜୀ ଶୁଦ୍ଧ ବ୍ରାହ୍ମଣର ।

କେତେ ଭଲ ଲାଗେ ଏଇ ସୁଅ
ଆଶା ବୈତରଣୀ ପହଁରି ଯିବାକୁ ।
ସୁବାସିତ ଲବଙ୍ଗ ଓ ଅଳେଇଚ
ଦ୍ୱୀପ କୂଳ ଛୁଇଁ ଛୁଇଁ ।

ହାତ ପାଆନ୍ତିର ରକ୍ତ କଇଁ ତୋଳି,
କାମନାର ନୀଳକଣ୍ଠେ ସଜାଇବା ପାଇଁ
ସାଧା ମଣିଷ ମୁଁ
ନିର୍ବାଣ କୃପାଣେ ଦୁଇ ପକ୍ଷ ଛେଦି
ହେବାକୁ ଚାହେଁନା ଅଥର୍ବ ଜଟାୟୁ
ହେଉ ପଛେ ପୁନର୍ଜନ୍ମ ବାର ବାର,
ଏ ମାଟିରେ,
କରୁଥିବି ମନୁଷ୍ୟ ଜନ୍ମର
ଜୟ ଜୟ କାର ।



ଜୁନାଗଡ଼
ତା ୯.୮.୯୫

# ସ୍ୱାଗତ ଅଗଷ୍ଟ ପନ୍ଦର

ସ୍ୱାଗତ ସ୍ୱାଗତ ବନ୍ଧୁ ଅଗଷ୍ଟ ପନ୍ଦର !
ଲଂଘି ଶତେକ ବାଧା ଉତ୍ତୁଙ୍ଗ ଲହର
ଜାତିର ବୋଇତ ଆଜି ପାଇଅଛି ତୁମ କୋଳେ
ପ୍ରିଶାନ୍ତିର ନିର୍ଭୟ ବନ୍ଦର ।

ତୁମରି ଗାତ୍ରରେ ଲେଖା ଏ ଜାତିର ଲୋହିତ ସ୍ୱାକ୍ଷର
ଘରେ ଘରେ ଦେଇଯାଅ ତୁମେ
ସ୍ୱାଧୀନତାର ଅଭୟ ମନ୍ତର ।
ପ୍ରାଣେ ପ୍ରାଣେ ଭରିଦିଅ ଆଜି
ବଞ୍ଚିବା ଓ ବଢ଼ିବାର ନ୍ୟାଯ୍ୟ ଅଧିକାର ।

ଏ ଜାତିର ସ୍ୱାଭିମାନ ତ୍ରିରଙ୍ଗା ପତାକା
ଗାଏ ତୁମ ବିଜୟ ସଂଗୀତ;
ଶତାବ୍ଦୀର ଦାସତ୍ୱ ଶୃଙ୍ଖଳ
ପରାଧୀନତାର କୁତ୍ସିତ କାଳିମା
ତୁମ ଆଗମନେ ହୋଇ ଅଛି ଧୌତ ।

ଏ ଜାତିର ଲହୁ ଲୁହେ ତାଜା ଆଜି ତୁମ ଇତିହାସ
ତଥାପି ଏ ଜାତି ବନ୍ଧା ଦାରିଦ୍ର୍ୟର କାଳ ନାଗଫାଶ
ଜାତି ଧର୍ମ, ବାଦ ବିସମ୍ବାଦ, ଅନ୍ତର୍ଘାତୀ କାଶ୍ମୀର ସମସ୍ୟା,
ଦିନୁ ଦିନୁ ବଢ଼ି ଚାଲେ କ୍ୟାନସର ଜାଲ ପରି
ଘୋଟିଯାଏ କଳା ମେଘ ବିଷମ ଦୁର୍ଦ୍ଦଶା ।
ନିର୍ବିକାରେ ଚାଲେ ଆଜି ମାଫିଆଙ୍କ କଳା କାରବାର
ଶୋଷଣ ପେଷଣ ଚାଲେ ହୋଲି ଖେଳ ଶ୍ରମିକ ରକ୍ତର ।

ହେ ବନ୍ଧୁ ଅଗଷ୍ଟ ପନ୍ଦର ।
ଦେଖିଯାଅ ସ୍ୱାଧୀନ ଦେଶର ହାନିଲାଭ ଦୁଃସ୍ଥ ଜନତାର
ଗୁହାରିବ ସେମାନଙ୍କ ପାଖେ ସ୍ୱାଧୀନତା ଆଣିଥିଲେ
ଢାଳିଦେଇ ବକ୍ଷର ରୁଧିର ।
'କର ଅବା ମର' ଦୀକ୍ଷା ଆଜିଯାଏଁ ହେଲା ନାହିଁ ଶେଷ
ଅନ୍ୟ ଏକ ସଂଗ୍ରାମର ସୂତ୍ରଧର ଆମେ
ମାଗୁଁ ଆଜି ତୁମରି ଆଶୀଷ ।
ଏଇ ବାର୍ତ୍ତା ଦିଅ ଆଜି ଅଗଷ୍ଟ ପନ୍ଦର
ଯେତେ ସବୁ ଲୁଟିଖିଆ, ଖଟିଖିଆ ଦଳ
ବେଳ ଥାଉଁ ଥାଉଁ ହୁଅ ହୁସିଆର ।



ଅଗଷ୍ଟ ନ' ୧୯୯୫
ଜୁନାଗଡ଼ ଜିଲ୍ଲାସ୍ତରୀୟ କବିତା ପାଠୋତ୍ସବରେ ପଠିତା
(ଆକାଶବାଣୀ ଭବାନୀ ପାଟଣା ସୌଜନ୍ୟରୁ)

# ମାଛକୁଣ୍ଡ

ନଟୁପରି ଘୂରୁଥିବା ଛୋଟ ଏକ ଗ୍ଲୋବ
ତା ଉପରେ ବିଶାଳ ଏକ ମାନଚିତ୍ର
ସୀମାରେଖା ମାଟି ଓ ପାଣିର
ତା ଭିତରେ ମୋ ସ୍ମୃତିର
ଟୋପାଏ ଅନ୍ଧାର ବଖରା,
ତୁ ମାଛ କୁଣ୍ଡ
ଅକ୍ଷାଂଶ ଓ ଦ୍ରାଘିମାର ଘେର ଭିତରେ
ଭୂଗୋଳ ଛାତ୍ରଟି ଘୁମେଇ ପଡ଼େ
ପାଦ ବି ଥକିଯାଏ ଘାଟୀ ଉଠାଣିରେ
ତୋ ସ୍ଥିତିର ନକସା ଖୋଜୁ ଖୋଜୁ ।
ସଭ୍ୟ ଜଗତଠାରୁ ବହୁଦୂରେ
ଆଲୋକ ଯେଉଁଠି ହାରମାନେ
ଅନ୍ଧାର ପାଖରେ
ଆଶ୍ରୟ ଖୋଜେ ଆଦିବାସୀ ଯୁବତୀର
ପଣନ୍ତ କାନିରେ
ପାହାଡ଼ ପର୍ବତ ଘେରା,
ଶ୍ରୀହୀନ ଧୂସର ପ୍ରାନ୍ତର, କ୍ଷୁଦ୍ର ଜନପଦ
ଧର୍ଷିତା ଏକ ଆଦିବାସୀ ରମଣୀପରି
ପରିତ୍ୟକ୍ତା ଆତ୍ମଗ୍ଲାନିରେ
ହରଡ଼ ଖେତର କେଉଁ ଏକ ନିବୁଜ ଗଳିରେ ।
ମନେପଡ଼େ କୁହୁଡ଼ିଘେରା ଶୀତୁଆ ସକାଳ
ଯନ୍ତ୍ରଚାଳିତ ନିଦୁଆ ମଣିଷ
ଟୁକୁ ଟୁକୁ ସଲପ୍ ନିଶାରେ
ନଦୀଟିଏ ବି ବହିଯାଏ ଅଳସ ଭଙ୍ଗୀରେ
ଆଦିବାସୀ ଯୁବକର ଶିଶୁଆ ଦେହର ସରହଦ୍ ଛୁଇଁ
ବିଦ୍ୟୁତ୍ ପ୍ରକଳ୍ପ ତୋର ମଥାମଣି
ସମଗ୍ର ରାଜ୍ୟଟି ଚକ୍‌ମକ୍ ଦିଶେ ଆଲୋକ ବନ୍ୟାରେ

ତୁ କିନ୍ତୁ ସ୍ୱପ୍ନ ଦେଖୁ, ନୀଳରାତ୍ରିର
ଗହମ ନିଦରେ, ଚଂଦା ପାହାଡର ଛାଇ ତଳେ
ସପ୍ତଫେଣୀର କରତ ଦାଢରେ ।
ତୋ କୁଡ଼ିଆର ମାଟିଆ ଦାଣ୍ଡରେ
ଦାରିଦ୍ର୍ୟର ବୋଇତଟିଏ ନଂଗର ଦେଇ ରହେ
ସଂଜ ଓ ସକାଳେ । ଲାଭଖୋରୀ ସଉଦା ନିଶାରେ ।
କୋଇଲି ଆଉ ବୋଲେନି ଗୀତ,
ଗୀତଟେ ଗାଇ ଯାଇଛି ଶେଷ ବସନ୍ତର ।
ବାଢ଼ି ଦିଏ ତା ଅଭିଯୋଗର ଫର୍ଦ୍ଦ
କଣ୍ଠରୁଦ୍ଧ କରେ ତାର
କପୋତୀର କରୁଣ ବିଳାପ
ବସନ୍ତ ଫେରିନି ଆଉ ବିଗତ ଦିନରୁ
ନିର୍ଯାତିତା ଝୁରେ ଶ୍ୟାମଳିମା,
ନିର୍ମମ ରାଜତ୍ୱ ଏଠି ଶୀତ ଓ ରୌଦ୍ରର ।
ଅନ୍ଧାର ଓ ଆଲୁଅର ଚିତ୍ରିତ ଜହ୍ନରାତିଟିଏ
ଘୋଡ଼ିହୋଇ,
ଶୋଇ ପଡ଼େ ଶବର ପଲ୍ଲୀଟି
ଭୋକିଲା ଶିଶୁ ଚିତାବାଘ ପରି ।
ଝୁମୁରୁ ଝାମୁରୁ ଗୀତ ଚଇତ ପର୍ବର
ଛନ୍ଦାୟିତ ହାତ ଓ ପାଦର ଶୃଙ୍ଖଳ,
ବଣ୍ଠା ଧାଙ୍ଗଡ଼ି ଛାତିରେ
ଘୁମେଇ ପଡ଼ିଥିବା, ମିଟି ମିଟି
ପାଉଁଶିଆ କପୋତ ଯୁଗଳ
ଆଦିବାସୀ ଯୁବକ ଆଖିରେ,
ଝିମିଝିମି ମହୁଲି ନିଶା, ସୃଷ୍ଟିର ଶିଶିର ତାଳେ
ଭିଜା ଭିଜା ଆଲୁଅ ଜହ୍ନର ।
ସବୁକିଛି ନୂଆ ଲାଗେ, ଅଜନବୀ ମଣିଷ ମନରେ
ଖୋଲିଯାଏ ଯେବେ ସ୍ମୃତିର ଝରକା
ଫରଚା ଦିଶେ ମଖମଲି ଚିତ୍ରପଟ
ସବୁଜ ସ୍ୱପ୍ନର
ଏକ ହଜିଲା ଦିନର ।



ଜୁନାଗଡ଼, ୨୫.୮.୯୫

# ସତରେ କଣ ?

ଏକୁତିଶାଳର ସିନ୍ଦୁର ମଖା
ମଂଜି-ଗଜୁରା ମୁହୂର୍ତ୍ତଠାରୁ
ଶ୍ମଶାନର ନିଆଁଲଗା ଆୟୁଷ ପର୍ଯ୍ୟନ୍ତ
ଛନ୍ଦାୟିତ ମହାକାଳ,
ସହଯାତ୍ରୀଙ୍କ ଚଲାପଥ, ଭାରୀ ଭିଡ଼ ।
ଅନ୍ଧଗଳି ଅରମା ଅସନା,
ଅନ୍ଧାର ଆଲୁଅ, ହସକାନ୍ଦ
ସ୍ୱାଗତ ତୋରଣ, ଫୁଲମାଳ
ଚେକା ପଥରର ଆମନ୍ତ୍ରଣ
ନିରୋଳା ପବନ ଆଉଁଶା
ବେଳା ଭୂମିର କୋଳାକୋଳି
ସପ୍ତରଙ୍ଗୀ ଆଶାର ଇନ୍ଦ୍ରଧନୁ
ହାନୀ ଲାଭର ଅଙ୍କକଷା କଷି,
ତାରାମାନେ ସତରେ କ'ଣ ଜୀବନ ?
ଜୟଯାତ୍ରା, ସାମ୍ରାଜ୍ୟ ବିସ୍ତାର
ଷଡ଼ଯନ୍ତ୍ର, ଲୁଣ୍ଠନ, ଧର୍ଷଣ
ଆଲେକ୍‌ଜାଣ୍ଡର, ଚେଙ୍ଗିଜ୍ ଖାଁନ୍
ଅଶୋକ, କଳାପାହାଡ଼ ନାମାଙ୍କନ ବିଜୟ ସ୍ତମ୍ଭର
ରାଜରାସ୍ତାରେ ମୁସଲମାନ୍ ମଶାଲଧାରୀ
ଓ ରକ୍ତନଦୀର ମଙ୍ଗୁଆଳମାନେ
ସଂଜ୍ଞା ଦେଲେ ସଭ୍ୟଜଗତର
ତାର ମାନେ କ'ଣ ସତରେ ଇତିହାସ ?
ସ୍ୱର୍ଣ୍ଣଲଙ୍କା ହୁଏ ଛାର ଖାର
ହେଲେନ ପାଇଁ ଟ୍ରୟର ପତନ !
ରୂପାୟିତ ହୁଏ ପ୍ରେମର ବାଦଶାହୀ ଖିଆଲ,
ଶ୍ୱେତ-କମଳ-ତାଜମହଲ
ମେହନତୀ ମଣିଷଙ୍କ ରକ୍ତ ଓ ହାଡ଼ରେ
ସତରେ ଏଇୟା କ'ଣ ପ୍ରେମର ନମୂନା ?



# ଶତାବ୍ଦୀର ଶେଷ ରାତ୍ରି

ପାହି ଆସେ ଶତାବ୍ଦୀର ଶେଷ ଅମାରାତ୍ରି
ସିନ୍ଦୁରିତ ପୂର୍ବାଶାର ପ୍ରଶସ୍ତ ଲଲାଟେ
ପୋଛିଦେଇ ଶତାୟୁର କଳଙ୍କ କାଳିମା
ଧୂମକେତୁ ପ୍ରସାରିତ ଧୂମାଳ ପୁଚ୍ଛରେ
ଟାଣିଦେଇ ତାରାର ତୋରଣ
ପ୍ରତୀକ୍ଷାରେ ସାରାରାତ୍ରି ଉଜାଗର
ନର ଓ କିନ୍ନର, ସମସ୍ତ ଦିଗପାଳ ମାନେ ।
ପରାସ୍ତ ସୈନିକ ସମ ଶତାୟୁ ଶତାବ୍ଦୀ
ପଛଘୁଞ୍ଚା ଦିଏ ପରାଜିତ ଥାଟ ବାଟ ସହ
ଚାହିଁ ରହେ ସମ୍ମୁଖରେ ନୈରାଶ୍ୟର ଧୂସର ପ୍ରାନ୍ତର
ଇତିହାସର ଜୀର୍ଣ୍ଣପୃଷ୍ଠାଟିଏ,
ତାର ଅବଶିଷ୍ଟ ଆକାଶକୁ ଛାଇଯାଏ
ଅଶୁଭ ଶକୁନର ପ୍ରସାରିତ ପକ୍ଷ ।
ସଫେଦ ଯବନିକା ପରି
ଜୀବନ ନାଟିକାର ଶେଷ ଦୃଶ୍ୟ ଅନ୍ତେ ।
ବିସ୍ତାରିତ ସାମ୍ରାଜ୍ୟ ତାର, ଭାଙ୍ଗିରୁଜି ଯାଏ
ସ୍ୱପ୍ନରେ ଗଢ଼ିଥିବା ତାସଘରପରି ।

କୁକର୍ମର କୁରୁକ୍ଷେତ୍ର ଅବା
ଶୁଭେ ଖାଲି ଶକୁନିର ପ୍ରତାରିତ ହସ ।
ଶୁଭେନିତ ଆଉ ଶଙ୍ଖର ଶୁଭଧ୍ୱନି,
ରଥର ଗର୍ଜନ ଅବା ଚକ୍ରର କଂପନ,
ରକ୍ତ ରଂଜିତ ସମସ୍ତ କୁରୁକ୍ଷେତ୍ର ଆଜି
ପଡ଼ିରହେ କଟାମୁଣ୍ଡ, କଟାହାତ
ଭାସିଯାଏ ଦୁର୍ଯ୍ୟୋଧନର ଶିରର କୀରିଟି
ନିଜ ଅର୍ଜିତ ରକ୍ତର ସ୍ରୋତରେ ।
ରଣକ୍ଷେତ୍ର ଆଜି ଶୃଗାଳ ଓ ଶାଗୁଣାଙ୍କ ଭିଡ଼,
ଅପର୍ଯ୍ୟାପ୍ତ ଭୋଜ୍ୟର ସମ୍ଭାରେ ।

ଖଣ୍ଡିତ କରବାଳ ହାତେ
ଶବପରେ ଶବ ରକ୍ତପାଦ ଥାପି
ଆଗେଇ ଚାଲେ ବିମର୍ଷ ଶତାବ୍ଦୀ,
ସେ ଏକ ଉନ୍ମତ୍ତ କବନ୍ଧ
ଖୋଜିବୁଲେ ହଜି ଯାଇଥିବା ଶିରଟି ତାହାର
ପ୍ରସାରିତ ତାର ସମସ୍ତ ଇଲାକା

ଆଲୋକର ବୃତ୍ତ କ୍ରମେ ହୁଏ ସଂକୁଚିତ
ସମୟର ରାହୁଗ୍ରାସ ପରି ।
ବାଜି ଉଠେ ସତର୍କର ଘଣ୍ଟି ଗୀର୍ଜା ଓ ମନ୍ଦିରେ
ମରଣର ଶେଷ ଘଣ୍ଟି ଅବା,
ମୃତ୍ୟୁର ଏକ କଳା ଛାଇ
ମାଡ଼ି ବସି ଚିପି ଧରେ ତଣ୍ଟି ।

ଉଇଁ ଆସେ ଶତାବ୍ଦୀର ସୂର୍ଯ୍ୟ ।
ସ୍ନାନ ସାରି ଅଗ୍ନିର ସମୁଦ୍ରେ,
ଅଭିଷେକ ମହୋତ୍ସବ ଦିଗଦିଗନ୍ତରେ,
ସୁବର୍ଣ୍ଣ ଚାମର ଟାଳେ କାଶତଣ୍ଡୀ ଫୁଲର ଲହର
ମନ୍ତ୍ରପୂତ ଓଁ କାର ଧ୍ୱନିରେ
ଅଚଳ ହିମାଦ୍ରି ହୁଏ ପ୍ରକଂପିତ
ସମୁଦ୍ର ଲହରି ଟେକି ଧରେ
ବକ୍ଷେ ମୁକ୍ତାହାର,
ସ୍ୱାଗତ ସଙ୍ଗୀତଗାଏ ବନହଂସୀଦଳ

ଚକ୍ରବାଳ ଆର ପାରୁ ବହି ଆସେ
ଶତାବ୍ଦୀର ସୁବର୍ଣ୍ଣ ବୋଇତ
ନାଉରୀର କଣ୍ଠେ ଆଜି ନୂତନ ସଙ୍ଗୀତ,
ଏକ ନୂତନ ଝଂକାରେ,
ଚରାଚର ସର୍ବେ ବିହ୍ୱଳିତ
ଅବତରଣ
ଏକ ସୁବର୍ଣ୍ଣ ଯୁଗର
ସୁବର୍ଣ୍ଣ ସକାଳ ।

■■■

୨୮।୯।୯୫, ଜୁନାଗଡ଼

# ଧରାବତରଣ

କମ୍ର ସୁଶୀତଳ ଶାରଦୀୟ ମଙ୍ଗଳ ଲଗ୍ନରେ
ଶକ୍ତି, ମୁକ୍ତି ଓ ସ୍ୱସ୍ତିଦାତ୍ରୀ
ମା ଶାରଦାଙ୍କ ଧରାବତରଣ
ଭରିଦିଏ ପ୍ରାଣେ ପ୍ରାଣେ ଅପୂର୍ବ ଉଲ୍ଲାସ ।
ନଭାଙ୍ଗନ ପ୍ଲାବିତ ହୁଏ ବିମଳ ଜ୍ୟୋସ୍ନାରେ
ଗର୍ଭିଣୀ ଧରିତ୍ରୀ ତୁମ ଆବାହନ କରେ
ଶ୍ୟାମଳ ଗାଲିଚା ପାରି କେଦାରେ କେଦାରେ ।
ଅଙ୍ଗନେ ଅଙ୍ଗନେ ସ୍ୱାଗତ ତୋରଣ ।
ମେଢ଼ ଓ ମଣ୍ଡପ, ପାର୍ବଣ ଅଟୋପ
ଚଉଦିଗେ ଶୁଭେ ଶଙ୍ଖ ମହୁରୀ ସ୍ୱାଗତର ସ୍ୱର ନହବତ,
ଅଗୁରୁ ଚନ୍ଦନ ଓ କସ୍ତୁରୀର ମହମହଗନ୍ଧ
ପ୍ରସାରିତ ହୁଏ  ତୁମ ଆଗମନର ମଙ୍ଗଳ ସଂକେତ
ମା ଭଦ୍ରେ ! ମା ମଙ୍ଗଳେ, ମୁକ୍ତି ଦାୟିନୀ
ତୁମେ ରକ୍ତ ପଦ୍ମାନନା, ରୋଷାୟିତ ଚକ୍ଷୁ
ଖଣ୍ଡା ଖର୍ପର ଧାରିଣୀ, ଅମୃତ ବର୍ଷିଣୀ
ତୁମେ ମା ବରାନନା ଦୁଷ୍କୃତ ନାଶିନୀ ।
ଶୁଭ ଆଗମନ ତବ ଅମୃତ ଲଗ୍ନରେ

ତୁମେ ମା ଶୁଭଙ୍କରୀ ସମସ୍ତ ବିଘ୍ନରେ ।
ଶକ୍ତିରୂପା ତୁମେ ସର୍ବଦେବ ପୂଜ୍ୟା
ଢାଳି ଦିଅ ମା କରୁଣାର ଆଶିଷ ଧାରା ।
ଅନ୍ତରେ ଅନ୍ତରେ ମାନବର ଦାନବ ପିପାସା,
ଜଗତର ଯୁଦ୍ଧ ବିଭୀଷିକା ଦୁଃଖ ଓ ବିଷାଦ
ଯେତେ ସବୁ ହୀନମନ୍ୟତା, ହିଂସା ଓ ଜଲ୍ଲାଦ
ତୁମ ପଦ ତଳେ ନିବେଦିତ
ଘେନା ହେଉ ଆମ ହୃଦର ନୈବିଦ୍ୟ ।

■■■
୧।୧୦।୯୫, ଦଶହରା (ମହାସପ୍ତମୀ)

# ମାନିନୀ

ପଞ୍ଜୁରୀର ପ୍ରପଞ୍ଚ ଭିତରୁ
ସୁନା ପକ୍ଷୀଟିଏ ଉଡ଼ିଗଲା ପରେ
ସେ ଯେପରି ହୋଇଯାଏ ଏକ ସ୍ୱପ୍ନ;
ତା ମୁହଁର ନାଲିନାଲି ବୋଲାଉଥିବା
ଦୁଇ ଓଠ, ଯାଉଁଳି ଝରକା ଖୋଲି
ଶବ୍ଦମାନେ ମୁକୁଳିବା ପରେ
ଫକ୍ ଫାକ୍ ଡେଣା ଝାଡ଼ି
ପାଲଟି ଯାନ୍ତି ରଙ୍ଗୀନ ପ୍ରଜାପତି ।
ପତି ବୋଲଉ ଥିବା ପତିତର
ମନ ବୃନ୍ଦାବନର ଗଳିକନ୍ଦିରେ
ଫୁଟିବାକୁ ପ୍ରୟାସ ଜାରି ରଖିଥିବା
ନୂତନ କଢ଼ିମାନଙ୍କୁ
କ୍ଷତ ବିକ୍ଷତ କରି, ମକ୍‌ଚି ମାକ୍‌ଚି
ଉଡ଼ିଯାନ୍ତି ଏକ ନିଭୃତ ଇଲାକାକୁ ।
ଆଶାର ଗୋଲାପି ଗୁଡ଼ିଟିଏ ଯେବେ
ଇଥର ଆକାଶରେ ଝୁଲି ରହେ
ମାଟିର ବାସନା ବାହାରେ
ଶବ୍ଦର ଭ୍ରାନ୍ତ ପ୍ରଜାପତିମାନେ
ବିଶ୍ରାମ ନିଅନ୍ତି
ଅନ୍ତରୀକ୍ଷ ବୈଠକଖାନାରେ
ମେଘମାଳାର ନୀଳ ଗାଲିଚାରେ ।
ପତିତ କେବଳ ପଡ଼ିରହେ ।
ଶିବର ଜୀଅନ୍ତା ଶବପରି
ଶକ୍ତିର ପାଦତଳେ ମୋହିନୀ ମାୟାରେ ।
ତା ଶବ୍ଦର କୁହୁସ୍ୱର ଖିଏ

ଯେବେ ମିଶିଯାଏ ଧାରେ ଲୁହରେ
ସେ ପାଲଟିଯାଏ ଏକ ଝରଣା,
ଛନ୍ଦାୟିତ ହୋଇ ଝରିଯାଏ
ତା ବକ୍ଷର ମର୍ମର ଉପତ୍ୟକାରେ ।

ମନୋରମ ଗଜଲ ରାତିଟିଏ
ଥମିଯାଏ, ପ୍ରେମ ଓ ଅନୁରାଗ ଅନୁରଂଜନାରେ
ତା ମୁହଁ ଫରୁଆରୁ, ଆଶ୍ଳେଷର ଶବ୍ଦମାନେ
ବିଛାଡ଼ି ପଡ଼ନ୍ତି ହୀରା ମୋତି ପରି
ହାତ ପା'ନ୍ତି ଆକାଶରେ; କାମନାଟି ଝୁଲିରହେ
ବନ୍‌ସି କଂଟାରେ,
ତା ପ୍ରେମର ଗଭୀର ସମୁଦ୍ରରେ ।

■■■

ବିଜୟା ଦଶମୀ
୩।୧୦।୯୫

# ଜୀବନ କବିତା

ଭଲ ହେଲା
ଛୋଟ ଏକ ଦେଖାଟିଏ ହେଲା
ଅସମୟରେ, ଅଜାଗାରେ
ଏକ ନିରୋଳା ମୁହୂର୍ତ୍ତରେ ।
ବସି ଭାବୁଥିଲି ସେଇ ହଜିଲା କଂଚିର କଥା ।
ସବୁ ରହସ୍ୟ ଜୀବନ ଯାକର,
ସେ ଥିଲେ ଖୋଲି ହେଉଥିଲା,
ଏବେ ତାର ଆବଶ୍ୟକତା ବି ନାହିଁ ।

କେଉଁ ଆଲମିରା ଥାକରେ
ଅବା କେଉଁ ଟିଣବାକସ୍ ଭିତରେ
କଳଙ୍କି ଲାଗିଯାଇଥିବ,
ଆହା ବିଚାରା ସବୁବେଳେ ଝୁଲି ରହିଥିଲା
ତା କାନ୍ଧରେ ଶାଢ଼ିର କାନିରେ ।
ଝୁଲି ରହିବା ପାଇଁ ଅବଲମ୍ବନଟିଏ ଦରକାର
ମଣିଷ ପାଇଁ ହେଉ ବା
ବାୟା ଚଢ଼େଇର ବସା ।
ସବୁ ହଜିଲା ହଜିଲା ଅନୁଭୂତି
ସଂସାର, ସମୟ ସବୁକିଛି ।

ଯେମିତି ହଜିଯିବ ଏ ଦିନଟିର, ସ୍ମୃତି,
ସମୟ ବି ତ ଛାଡ଼ିଯାଉଛି ଆମରି ଦେହରେ
ତା ଅବକ୍ଷୟର ଆଇଁସିଆ କାତି ।
ମେଘର ସେଇ ନୀଳ ଘୋଡ଼ାଟି
ଯେମିତି ସୂର୍ଯ୍ୟକୁ ଅଟକେଇ ରଖିଛି

ଦି କୁଜିଆ ପାହାଡ଼ ସନ୍ଧିରେ
ତା' ଉଦ୍ଧତ ଖୁରା ଦୁଇଟିରେ ।

ସ୍ମୃତି ବି ତ ସମୟକୁ ଅଟକେଇ ଦିଏ,
ଫେରାଇନିଏ ସେଇ ଶୈଶବ ଓ କୈଶୋରର
ଅଭିଆଡ଼ି ସମୟ ତୁଠକୁ ।
ଯେଉଁଠି ବୟସ ମାନେ ବେପରଓ୍ୟାଏ
ଲୁଗା ପାଲଟନ୍ତି ଏବଂ
ହଳଦୀମଖା ମୁହଁ ଦେଖନ୍ତି
ଛାଇ ଦେଖନ୍ତି ଜଳ ଦର୍ପଣରେ ।
ତୁମେ କହନା, କବି ହେବା
ନିହାତି ମାମୁଲି କଥା ?
ଯେମିତି କୋଇଲିଟେ ହେଲେ ଗୀତ ଗାଇବା

ରଜନୀଗନ୍ଧାଟି ହେଲେ ମହମହ ବାସିବା,
ଆଉ ମହୁମାଛିଟେ ହେଲେ
ମହକ ଭରା ଫୁଲ ବାଛିନେବା ।
ଆକାଶରେ ଚନ୍ଦ୍ର
ସମୁଦ୍ରରେ ନୌକାଟିଏ, ଥାପି ଦେଇପାରିଲେ
ନିଜେ ନାବିକ ସାଜି,
ହାତରେ କାତଟିଏ ଧରି,
ଚକ୍ରବାଳକୁ ଲକ୍ଷ୍ୟ ରଖି
ଉପର ବାଲାର କାଣୀ ଆଙ୍ଗୁଠିରେ
ବିଶ୍ୱାସର ସୂତାଖିଏ ବାନ୍ଧି,
ମନ ଫୁଲାଣିଆ ଗୀତଟିଏ ଗାଇ ପାରିଲେ ହେଲା ।

ତାପରେ,
ଅରମା ପାହାଡ଼ ପର୍ବତ, ଖାଲ ଢିପ,
ସମୁଦ୍ର ଓ ଆକାଶ,
ବାଟ ଛାଡ଼ି ଦେବେ ଏକ ମୁହାଁ ରାସ୍ତାରେ
ଆମେ ହୋଇଯିବା, ଏକ ଭିନ୍ନ ମହାକାବ୍ୟର ନାୟକ
କାବ୍ୟ ପୁରୁଷ; ରାସ୍ତାର ଶେଷ ମାଇଲ ଖୁଣ୍ଟିରେ
ବିପ୍ଳବୀ କବିତାଟିଏ ହେଇ ଲଟକି ପାରିଲେ ହେଲା ।



# ନିରୁଦ୍ଦିଷ୍ଟା

ଗାଁର ନୂଆ ବୋହୂ
କାକର ଭିଜା ପାହାନ୍ତିରୁ
ନଈ ତୁଠକୁ ଯାଇଛି ଯେ
ରତ ରତ ବେଳ ହେଲାଣି
ଏ ଯାଏଁ ଫେରିନି !
କିମ୍ବଦନ୍ତୀ କୁହେ
ବେଳେ ବେଳେ ଏ ଗାଁରେ
ଏମିତି ବି ହୁଏ
ନୂଆ କଥା ନୁହେଁ ।

ବେଶ୍, ଲସର୍ ପସ୍‌ର ଖୋଜା ଖୋଜି,
ଫୁସ୍ ଫାସ୍ ପଚରା ଉଚରା ।
ନଈ ତୁଠ, ନାଉରୀ ଘାଟ
ସତୀପାଟ ଓ କିଆବାଡ଼ ।
ଗାଁର ବାଟଘାଟ, ନଈତୁଠ
ଶୁନ୍‌ଶାନ୍ ଶ୍ମଶାନ ପାଲଟେ,
ସମୟ ଅଟକି ଯାଏ, ଏ ଗାଁ ମୁଣ୍ଡ
ବରଗଛ ଛାଇ ଦୋଛକି ରାସ୍ତାରେ ।
ଓଜନିଆ ଶ୍ୱାସ ପ୍ରଶ୍ୱାସରେ ।
ଗାଁର ବାୟୁମଣ୍ଡଳ ଥମ୍ ଥମ୍ ହୁଏ,
ଅଦିନିଆ ଝଡ଼ଟେ ବହିଯାଏ ଗାଁ ଦାଣ୍ଡ ରାସ୍ତାରେ,
ଖଣ୍ଡିଆ ଭୂତଟିଏ ହୋଇ,
ନାଉରୀ ବାହିଚାଲେ ତା ନାଆ,
ସତୀପାଟର ଗହୀର ଜଳରେ
ଭଉଁରି ଖେଳେ କିମ୍ବଦନ୍ତୀଟିଏ
ଚହଲି ଯାଏ କାଚକେନ୍ଦୁ ପାଣି
ଶଙ୍ଖଚିଲର ଉଡନ୍ତା ଛାଇରେ ।

ଦିନ ଗଡ଼ିଚାଲେ, ସନ୍ଦେହର କର୍ଫ୍ୟୁ
ଉଠିଯାଏ ତା ମନକୁ ଶୀତସକାଳର କୁହୁଡ଼ି ପରି ।
ସେ ବର୍ଷ,
ଆମ୍ବ ଗଛମାନଙ୍କରେ ବଉଳ ଖୁନ୍ଦି ହୋଇଯାଏ,
ସଜନା ଗଛରେ ଢେର ଢେର ଫୁଲର ସମ୍ଭାର
ଗାଁ ଦାଣ୍ଡଟି ମନ୍ ମହ ବାସୁଥାଏ,
ତା ସ୍ମୃତିଟି ଉଂକିମାରେ,
କୃଷ୍ଣଚୂଡ଼ାଟି ସଜାଡ଼ିଥିବା ଫୁଲଦାନୀଟିରେ ।

ନୂଆବୋହୂ କାହାଣୀ ପାଲଟେ,
ଜଳପରୀ ଅବା ମେଘପରୀ ସାଜି,
ଉଜ୍ଜ୍ୱଳ ହୋଇଯାଏ ନଇତୁଠରୁ ।
ତାର ଦୁଇ ଘନନୀଳ ଆଖି
ପାଚିଲା ଧାନ କ୍ଷେତ ପରି ସୁନାଦେହ
ନୀଳ ଶାଢ଼ୀର ବେହରଣ,
ଅସ୍ତସୂର୍ଯ୍ୟର କିରଣ ପରି ଝଲମଲ ତାର କେଶ,
ସନ୍ଦେହର ଜାଲ ବୁଣୁଥିଲା,
ସଭିଙ୍କ ଆଖିରେ, ମଣିଷ ଏକ ଅନ୍ୟ ରାଇଜର ।

ପରୀଟିଏ ହେବାର ସବୁଲକ୍ଷଣ ଥିଲା
ମନରେ ଦେହରେ ଚାଲିଚଳନରେ,
ନାନା ତୁଣ୍ଡେ ନାନା କଥା,
ଅନେକ କଥା, ଅନେକ ବ୍ୟଥା
ସମୟର ଦସ୍ତାବିଜରେ ଦରଜ ହେଲା,
ନବବଧୂର,
ଯଉତୁକ ଜନିତ ଆତ୍ମହତ୍ୟା ।

■■■

୨୯।୧୦।୯୫,

# ପଲ୍ଲୀଭୂଇଁ

ସବୁକିଛି ମିଶିଯାଏ ଚକ୍ରବାଳଧାରେ
ହିଡ଼ବାଡ଼, ତୋଟାମାଳ,. କିଆବଣ
ହେମନ୍ତର ସବୁଜ ବନ୍ୟାରେ ।

ଧାନ ଖେତର ରଙ୍ଗ ବୋଳି ତମାମ୍ ଦେହରେ
ଶୁଆଶାରୀ ଉଡ଼ିଯାନ୍ତି ଡେଣା ଛନ୍ଦି
ଚକ୍ରବାଳ ସୀମାରେଖା ପାରି
ଭାଙ୍ଗି ଯେତେ ସୁନାର ପଞ୍ଜୁରୀ ।

ଲୋଟି ଯିବାକୁ ଇଚ୍ଛାବଳେ ଶିଶୁଟିଏ ହୋଇ
ବିଲିୟାର୍ଡ ଟେବୁଲର ରଙ୍ଗୀନ ପେଣ୍ଟୁପରି
ଇଚ୍ଛାମୟୀ ଧରିତ୍ରୀର
ସବୁଜିମା କଞ୍ଚା ପଣନ୍ତରେ ।

ମେଘର ଲୁହ ଆଉ,
ଜୀବନ ଶିଳ୍ପୀ ମାଟି ମଣିଷର
ଲହୁଭିଜା ସିଆର ଧାରରେ,
ମହକି ଉଠେ ଧାନଫୁଲ
ଧୂସର ମାଟିରେ ।

ବେଙ୍ଗଳାର ମଥିତ ଖୁରାରେ
ଦୁଃଖ ଯେତେ ମକଚି ହୋଇ
ସୁଖର ଦାନା ବାନ୍ଧିଯାଏ,
ସ୍ୱର୍ଣ୍ଣଶସ୍ୟ, ପଉଷର ପୁଷିତ ଖଳାରେ ।
ଶେଷ ହୋଇ ଆସେ ଶୀତ ରାତି,

ସରିଆସେ ଧୂମାଳିଆ ଲଣ୍ଠନର ବତି,
ଶଗଡ଼ିଆର ଢୁଲୁଢୁଲୁ ନିଦୁଆ ଆଖିରେ
ମଠୁଆ ବଳଦ ଯୋଡ଼ିର ଛନ୍ଦାୟିତ
ଟିଣି ଟିଣି ଘଣ୍ଟି ।
ସ୍ୱର୍ଗର ସ୍ୱପ୍ନ ଲଦିହୁଏ,
ଧୂଳିମାଟି ପଲ୍ଲିର ରାସ୍ତାରେ ।
ଝରକା ଖୋଲି ଚାହିଁ ରହେ
ଚାଷୀଘର ବୋହୁ,
ଭାଗ୍ୟ ତାର ଉଙ୍କାଣିଆସେ
ଶବାଡ଼ ଗୋବାରେ,
ଝୋଟି ଭରା ଗାଁଦାଣ୍ଡ, ତୋରା ଦୁଶେ
ନୂତନ ରଶ୍ମିରେ;
ମାଣବସା ମାଣ ପୂରିଯାଏ,
ମାର୍ଗଶୀର ଆଦ୍ୟ ଗୁରୁବାରେ ।

■■■

ଜୁନାଗଡ଼
୨।୧୧।୯୫

# ଚାତକ

ଟୋପାଏ ଜୀବନ ପାଇଁ
ଉଝାଳି ଦେଉ ତୋ ଜୀବନ ଗୋଟାକ,
ରେ ସତ୍ୟବ୍ରତ ବିବେକୀ ଚାତକ,
ତୋର ଏ ଅଙ୍ଗୀକାର କା' ପାଇଁ ?
ନିଜ ପାଇଁ,
ପିପାସିତ ଧରିତ୍ରୀ ପାଇଁ
ନା ଏ ସର୍ବଗିଳା ସମୁଦ୍ର ପାଇଁ ?
ନିଃଶବ୍ଦ ଆକାଶର ବୁକୁଚିରି
ଉଡ଼ିଯା ତୁ,
ନୀଳ ମେଘର ପାଚେରୀ ଡେ଼ଇଁ
ଅଦୃଶ୍ୟ ସିନ୍ଧୁରୁ ବିନ୍ଦୁଏ ପାଇଁ
ଏତେ ପ୍ରତୀକ୍ଷା,
କେତେ ଯେ ଆକୁତି
ସତେ ଯେମିତି ଶୋଷିନେବୁ
ଅଦୃଶ୍ୟ ଭାସମାନ ନୀଳ ସମୁଦ୍ରକୁ ।
ଅଗସ୍ତି ମୁନିପରି ଶୋଷି ନେବୁ ସତେ
ସୁଡୁକାଏ ଚଲୁରେ ବାରିଧି ଗୋଟାକୁ ।

ମୁଁ ଜାଣେ
ତୋର ସେ ସାମୁଦ୍ରିକ ପିପାସା ନାହିଁ
ନାହିଁ ତୋର ଆରଣ୍ୟକ କ୍ଷୁଧା,
ନାହିଁ ତୋର ଅଭିମାନ
ଯୋଗସିଦ୍ଧ ସାଧକର ।
ତୋର ଏ ତପସ୍ୟା, ଏ ଅନ୍ୱେଷଣ
ଧରିତ୍ରୀ ପାଇଁ, ସୃଷ୍ଟି ପାଇଁ
ଜୀବନ ପାଇଁ ଜୀବନ ଭିକ୍ଷା
ଅଭିଶାପ୍ତା ଅବା ତପସ୍ୟାର ।

ତେଣ୍ଟେଇର ଅଭିଯୋଗ,
ବେଇମାନ୍ ସମୁଦ୍ର ଆଗରେ,
ଆତ୍ମସାତ୍ କରି ନେଇଛି,
ତାର ଆତ୍ମଜ ତୃଣକୁ,
ପଣ ତାର, ଛଡ଼େଇ ନେବ
ମାତୃତ୍ୱର ଅଧିକାର ।
ଶୋଷିନେବ ସମୁଦ୍ର ଗୋଟାକ,
ତାର ତୃଷିତ ଚଞ୍ଚୁରେ ।

ହୁଏତ ସମୁଦ୍ରର ବି ଭୟ ଅଛି ନିଃଶେଷ ହେବାର,
ହୃଦୟଟିଏ ବି ଅଛି,
ମାତୃତ୍ୱର ।
କେଉଁ ଏକ ସୁନ୍ଦର ସକାଳେ,
ତେଣ୍ଟେଇ ଦେଖୁଛି,
ଓଗାଳି ଦେଇଛି ସମୁଦ୍ର
ତାର ଦୁଇ ଭ୍ରୃଣ, ଝଟକୁଛି
ସୂର୍ଯ୍ୟର ପ୍ରଥମ ରଶ୍ମିରେ
ହଳେ ହୀରାଖଣ୍ଡପରି
ବେଳାଭୂମିର ସୁବର୍ଣ୍ଣ ଶଯ୍ୟାରେ ।
ଚାତକଟା ବି ବସିଛି ଆତ୍ମସନ୍ତୋଷରେ,
ଇନ୍ଦ୍ରଧନୁର ସ୍ୱାଗତ ଦୋଳିରେ ।

ମୌସୁମୀର ଆଗମନୀ,
ମେଘମାଳାର ନୀଳ ଫର୍ଦରେ,
ହଠାତ୍ ବିଜୁଳି ଆଙ୍କି ଦେଇଛି,
ସ୍ୱୀକୃତିର ସୁବର୍ଣ୍ଣ ସ୍ୱାକ୍ଷର ।

■■■

ପ୍ରଥମାଷ୍ଟମୀ
୧୫।୧୧।୯୫

# କଳାହାଣ୍ଡିର କଳାରାତି

କଳାହାଣ୍ଡି !

ଦୁଃଖିନୀ ମାତା ମୋର ।
ଦେଖିଅଛି ତୋତେ ଜୀବନର ପ୍ରତିଟି ମୁହୂର୍ତ୍ତେ
ବିଭିନ୍ନ ରୂପରେ ।
ଘଞ୍ଚ ଶାଳବଣ ଅବା ସ୍ୱନାରଂଗ ଅଳସିର ଖେତେ
ଶ୍ରାନ୍ତ କ୍ଳାନ୍ତ ଅଶିତି ବର୍ଷର ଅସହାୟା ନାରୀ ।
କାନ୍ଧେ ତୋର ଦା' ଓ କୋଦାଳ,
ମାଂସ ଓ ରକ୍ତର ଶରୀରତ ନୁହେଁ
ସମୟ ସୂତ୍ରରେ ଗୁନ୍ଥା ଏକ ଚଳମାନ ଅସ୍ଥି ।

ମୁଣ୍ଡେ ତୋର ଶକ୍ତ ଏକ ଜାଳେଣିର ବୋଝ
ହାତରେ ବାଉଁଶର ବାଡ଼ି,
ପେଟରେ ଜଳୁଛି ଖାଲି ରକ୍ତର ବିହୁଡ଼ି ।
ତୋ ଭଙ୍ଗାପିଠିରେ ସମୟର ନିଷ୍ଠୁର୍ ଚାବୁକ୍
ମୁହଁଟି ତୋର ବିକଳ ବିବର୍ଣ୍ଣ
କର୍ଷଣ-କର୍ଷିତ ଡଙ୍ଗର ତଳିର
ବନ୍ଧ୍ୟା ଟାଙ୍ଗର ଉପତ୍ୟକାଟିଏ ।
ଆଖି ତଳୁ ସରି ସରି ଆସେ ଜୀବନ ଆଲୋକ
ତଥାପିତ ଚାଲିବାକୁ ହେବ ।
ଗଣିଗଣି ଚଲାପଥର ଶେଷ ଭଙ୍ଗା ମାଇଲ ଖୁଣ୍ଟ
ହେଉ ପଛେ ଅଦୃଷ୍ଟ ଅସ୍ପଷ୍ଟ ।

ଏ ବୟସେ ପୁତ୍ର କନ୍ୟା ବଧୂ ପାଶେ କାହିଁ ?
ଜୀବନ ଯନ୍ତ୍ରଣାରେ ନିଷ୍ଠୁର ଡାକରେ
ନିଜ ପ୍ରିୟଜନ ଭିଟାମାଟି ଛାଡ଼ି
ଆସାମର ଚା ବାଗାନ ଅବା ଦାଦନ ଶ୍ରମିକ
ଗୋଟି ଖଟେ ଚାଇଁବାସା କୋଇଲା ଖଣିରେ,
କେବେତ ଆସିବେ ଫେରି

ପୁତ୍ରବଧୂ ସନ୍ତାନ ସନ୍ତତି ସାଥେ,
ଦି ଖଣ୍ଡ ହାଡ ନେଇ, ମୁଣ୍ଡେ ବୋହି ସମସ୍ତ ସଂସାର

ସେ ଏକ ପ୍ରତୀକ୍ଷା ଜନ୍ମଜନ୍ମାନ୍ତର ।
ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ, ତୃଷିତ ନୟନର
ଘରବାହୁଡ଼ା ଅମୃତ ଲଗ୍ନରେ ।
ହିସାବ ନିକାଶ ହୁଏ ଲାଭ ଓ କ୍ଷତିର
ଜନ୍ମ ଓ ମୃତ୍ୟୁର ।
ପୂର୍ଣ୍ଣଚ୍ଛେଦ ପଡ଼େ ଏକ ସଂକ୍ଷିପ୍ତ ଇତିହାସର
ପରାଜିତ ଉପନିବେଶର
ଘରେ ତୋର ଝୁଲେ ତାଲା,
କୋର୍କର ପରିଓ୍ୟନାଧରି ଦାଣ୍ଡେ ଉଭା
ସରକାରୀ ପିଅନା ଅବା,
ବକିୟାର ଗାଁ ସାହୁକାର ।

ଜୀବନ ଏଇଠି ମାନେ କେବଳ ବଂଚିବା
ଦିନ ରାତି ବର୍ଷ ଗଣି ଗଣି ।
ଜୀବନର ଭଙ୍ଗା ସିଲଟ୍‌ରେ,
ହାନୀଲାଭ ଭଗ୍ନାଂଶ କଷିବା ।

ଜୀବନ ଏଠି,
ଏକ୍ୱାରିୟମ୍‌ର ପୋଷା ସୁନାମାଛ ପରି
ନିସ୍ତରଙ୍ଗ ଜଳଧାରେ ଚକର କାଟିବା
ଆଉ ସରି ସରି ଆସୁଥିବା
କ୍ୟାନସ୍‌ର ରୋଗୀର ଜୀବନ ନାଟିକା ପରି
ଆଶ୍ୱସ୍ତିର ବଟିକା ଗଣିବା ।
ଇଉକାଲି ଗଛ ଛାଇ ପରି ସମୟଟି ଅତି ଲମ୍ୱା ଏଠି
ଖାଲି ଛୋଟ ହେଇଯାଏ ମନୁଷ୍ୟର ମନଟି ।
ଖର୍ବକାୟ ବୋନ୍‌ସାଇ ପରି ।
ମେଘାବୃତ କାଳରାତ୍ରିର ଜଠର ଭିତରେ
ଟିଟ୍ଟିଭଟି ଡ଼େଣା ପିଟେ, ନୈରାଶ୍ୟର ଦୀପଦଣ୍ଡି ପରେ ।

ଖୋଜଇ ଆଶ୍ରୟ,
ଉଷାର ଆଲୋକ ପାଇଁ
ସ୍ତବପାଠ କରେ ନୂତନ ସୂର୍ଯ୍ୟରେ ।
ଏଠି କି ସୂର୍ଯ୍ୟକେବେ ଉଏଁ

ଆଶାର ଦୀପଟିଏ ହୋଇ,
ସୂର୍ଯ୍ୟ କି ଢାକିଛି କେବେ ଆଶାର ମୟୂଖ,
ଆଶାର ଆଲୋକ ଖାଲି ବିଞ୍ଛିହୁଏ
ପାହାଡ଼ ସେପାରି,
କିଏ ତାକୁ ହତ୍ୟା କରେ ଗୁମ୍ଫାର ଭିତରେ
ଆଉ ସୂର୍ଯ୍ୟାସ୍ତରେ ଫିଙ୍ଗିଦିଏ ପାହାଡ଼ ସେପାରି
ଚକ୍ରବାଳ ଧାରେ,
ପାପଗର୍ଭ ଶିଶୁଟି ପରି ପଡ଼ିରହେ ରକ୍ତ ଜୁଡୁବୁଡୁ,
ବ୍ୟାଣ୍ଡେଜ କନାରେ
ରାସ୍ତାକଡ଼ ମ୍ୟୁନିସିପାଲିଟି ଡଷ୍ଟବିନ୍ ତୀରେ ।
ଆଦିବାସୀ ମୃତ ଶିଶୁ ନେଇ ଶବବାହକରେ
ହରଡ଼ କ୍ଷେତର ଉଷର ଭୂଇଁରେ ।

ମା ମାଟି କାଙ୍କେ ଭରିଦେବ
ସୁନାର ଫସଲ ତା ପୋଡ଼ା ଭୂଇଁରେ
ଜୀବନଟା ଏଠି ପାହାଡ଼ ତଳର ଘାସ
ଉଜୁଡ଼ିଯାଏ ମଣିଷ-ରୂପୀ
ବାଘ୍ରା ଓ ଶୂକର ଦନ୍ତରେ
ବିଡ଼ମ୍ବିତ ଭାଗ୍ୟର କାରାବାସ ହୁଏ
ଯେତେ ସବୁ ସମାଜପତି କଂସଙ୍କ ଦାୟରେ
ଦେବକୀ ପାଲଟେ ବନ୍ଧ୍ୟା,
ତ୍ରସ୍ତ ନୟନେ ଚାହିଁ ରହେ ଖାଲି
ନପୁଂସକ ବାସୁଦେବ ମୁହଁ
ସଇତାନ ହାତେ କାନ୍ଦେ
ସଦ୍ୟଜାତ ସଂତାନ ତାହାର ଅଷ୍ଟମ ଗର୍ଭର ।

ଅଭିଶପ୍ତା ନାରୀଟିଏ ତୁ କଳାହାଣ୍ଡି ।
କେଉଁ ଅପଦେବତାର କୁଚକ୍ରରେ ପଡ଼ି,
ମର୍ତ୍ତ୍ୟପୁରେ ଜନ୍ମ ନେଲୁ ତୁ ପାଷାଣୀ ଅହଲ୍ୟା ସମ,
ଯୁଗ ଯୁଗ ଯାଏ ବିତି, ପ୍ରତୀକ୍ଷାର ସୀମାହୀନ ରାତି
ପଥ ଚାହିଁ ଚାହିଁ,
ତୋ ଭାଗ୍ୟରେ ମୁକ୍ତି ଅବା କାହିଁ ?
ତୋ ଭାଗ୍ୟରେ ଲେଖା ମରୁ ଓ ମରୁଡ଼ି
ତୋ ସନ୍ତାନେ ଦାସତ୍ୱର କୋରଡ଼ା ଓ ବେଡ଼ି
ଭୂମିପୁତ୍ର ଚାହିଁ ରହେ ବିଧବା ଆକାଶ

ଓ ଦାଣ୍ଡର ମେଘରେ,
ଫଟା ଭୂଇଁ ଚାତକ ସାଜେ ତୃଷିତ ନୟନେ
କଳାହାଣ୍ଡିଆ ଗର୍ଭିଣୀ ମେଘ ପାଇଁ;
ମେଘ ହୁଏ ବନ୍ଧ୍ୟା, ମାଟି ଅନାବାଦୀ
କଳାହାଣ୍ଡି ପାଲଟିଯାଏ ଶୁଷ୍କ ମରୁଭୂଇଁ
ଛାଖଣ୍ଡେ ପେଟ ପାଇଁ,
ଘରଚଟିଆ ଉଡ଼ି ଅବା ଯିବ କାହିଁ
ତିନି ଭୂବନରେ ଠାବ ତାର ନାହିଁ ।
ଗାଈ ଗୋରୁ ଛେଳି ମେଣ୍ଢା କଂସା ଓ ବାସନ,
ବନ୍ଧା ପଡ଼େ, ପୂରିଯାଏ ସାନ୍ତଙ୍କ କୋଠା ଓ ଅମାର
ପୁଅ ଝିଅ ହୁଏ ବିକ୍ରି ପଚା ଷଢ଼ା ପଣ୍ୟ ଦ୍ରବ୍ୟ ସମ ।
ଯୁବତୀ କନ୍ୟାର କଂଚା ଦେହ ହୁଏ ବିକ୍ରି
ମାତ୍ର କେତୋଟି କଉଡ଼ି ମୂଲ୍ୟରେ,
ଆଖିରେ ସ୍ୱପ୍ନ ଅବା କାହିଁ ଯୁବତୀ କନ୍ୟାର
ପେଟରେ ନାହିଁ ଦାନା, ପିଠି ପାଇଁ ନାହିଁ ଖଣ୍ଡେ କନା
ପେଟର ଜ୍ୱାଳାରେ, ମାନ ଇଜ୍ଜତର ମୂଲ୍ୟ ଅବା କାହିଁ ?

ମା କଳାହାଣ୍ଡି ! ରତ୍ନଗର୍ଭା ତୁହି
ତୋ ଗର୍ଭରେ ହୀରା, ନୀଳା, ମାଣିକ ଭଣ୍ଡାର
ତୋ ସନ୍ତାନ କିଂତୁ ନୁହେଁ ପାରିବାର ।
ବଣିକ ଓ ଦଲାଲର ହାତେ,
ଖଣି ଓ ଖାଦାନ୍ ହୁଏ ଚୂରମାର
ରାତା ରାତି ହୁଏ ତୋଳା
କଳାବଜାରୀଙ୍କ ତୃପ୍ତ ଇମାରତ
ତା ଛାତିରୁ ସିଞ୍ଚି ରକ୍ତ,
ଟେକି ଦିଏ ସୁନାର ଫସଲ ।
ତୋର କି ଥାଏରେ ଭାଗ,
ଭାଗେ ତୋର ହିଡ ଆଉ ନାଡ ।
କଥାରେ କହନ୍ତି- ''ମଦ ଘଡା,
ମଦ ସଇଲେ ଗଡ଼ ଗଡ଼ା'' ।

ଜୀବନ ମାନେଇ କ'ଣ ଜୀବନ୍ତ ଯନ୍ତ୍ରଣା ?
ମଣିଷ ମାତ୍ରେଇ କଣ କଂସ ଓ ପୁତନା ?
କାହିଁ ତେବେ ସେ ସନ୍ତାନ ଅଷ୍ଟମ ଗର୍ଭର
କଷଣ ଶୃଙ୍ଖଳ କାଟି ମୁକ୍ତି ଦେବ,

ଦେବ ସତେ ଜୀବନର ନୂତନ ବିନ୍ୟାସ
ଜୀବନ ଓ ବୃଦ୍ଧିର ପୋଷକ ନିର୍ଯ୍ୟାସ ।
ଆମେ ସବୁ ଖଟିଖିଆ ମହୁମାଛି ପଲ
ତୁମେ ସବୁ ଲୁଟିଖିଆ ପଙ୍ଗପାଳ ଦଳ,
ମେହନତିର ମଣିଷ ଆମେ,
ଗଢ଼ିଦେବୁ ତୁମ ପାଇଁ ତୁଙ୍ଗ ଇମାରତ୍
ଆମରି ଆଶ୍ରୟ ହେବ ନର୍ଦ୍ଦମା ଓ ଫୁଟପାଥ୍
ତୁମରି ଭାଗ୍ୟରେ ଲେଖା ଅଶୋକା ରେଷ୍ଟୋରା,
ଓ ହୋଟେଲ ତାଜମହଲ,
ସାକୀ ଓ ସୁରାରେ ତୁମ ରାତି ମସ୍‌ଗୁଲ୍ ।
ତୁମ ଉଚ୍ଛିଷ୍ଟ ଭରା ମହାନଗରୀର ଡଷ୍ଟବିନ୍
ଆମ ଭୋକିଲା ପିଲା କବିଲା,
କୁକୁର ଓ ଭିକାରୀଙ୍କ ମେଳେ
ହୁଏ ଖିନ୍‌ଭିନ୍ ।

ମେହନତୀ ମଣିଷ ଆମେ,
ମେହନତ ମୂଲ ଆମ କାହିଁ
ହାଡ଼ ଭଙ୍ଗା ପରିଶ୍ରମ ସାର ।
ପିଠିରେ ଚାଖଣ୍ଡେ କନା ଆଉ
ପୋଷାଏ ତୋରାଣି ପାଇଁ
ଜୀବନଟା ସାରା ଖାଲି ହାଇଁ ପାଇଁ ?
କଳାହାଣ୍ଡି ! ରୋଗ ବଇରାଗର ଚରାଭୂଇଁ,
ବଂଚିବାର ସ୍ୱପ୍ନ ଚାଖୁଁ ଚାଖୁଁ
ବାସି ପଖାଳ କଂସାରେ ମୃତ୍ୟୁ ଆସେ ନଇଁ ।
ତୁଟୁକା ଚେରମୂଳୀ ଔଷଧ ଯାହାର,
ଗାଁ ଗୁଣିଆଁ, ଭୂତ ଓ ଡାହାଣୀ ସେବା
ସୁଖେ ହୁଏ ସାକ୍ଷାତ ଯମର ।
ଶିଶୁ ପାଇଁ ଟୋପେ କ୍ଷିର କାହିଁ,
କିଶୋରୀ କନ୍ୟା କ୍ଷୁଧାର ବିକଳେ,
ଅସ୍ତ୍ରୋପଚାରେ ବନ୍ଧ୍ୟା ହୁଏ ଯହିଁ,
ବିଶ୍ୱ ଦ୍ୱାରେ ନେତାଏ ଲଢ଼ନ୍ତି
ମାନବିକ ଅଧିକାର ପାଇଁ ।
ଗଣତନ୍ତ୍ର ନାମେ ଭୋଟ ଅଧିକାର
ରାଜନୀତି ପ୍ରହସନ ସାର,
ମଦବୋତଲ ଓ ଟଙ୍କା ଦୁଇଟି ପାଇଁ

କିଣାଯାଏ ଭୋଟ ଅଧିକାର ।
ନିର୍ବାଚିତ ଜନପ୍ରତିନିଧି,
ରାତାରାତି ପାଲଟି ଯାଏ ଏକ ଅମୂଲ୍ୟନିଧି
ନିର୍ବାଚନ ତପ୍ତ ରାଜନୀତି,
ଅଘୋଷିତ ଜମାନବନ୍ଦୀ
ହାତୀ ଦେବି, ଘୋଡ଼ା ଦେବି
ଅମାବାସ୍ୟାରେ ଦେବି ଜହ୍ନ ରାତି,
ରାମ ରାଜ୍ୟର ଫାଙ୍କା ପ୍ରତିଶ୍ରୁତି ।

ରାଜା ହେଲେ ମନ୍ତ୍ରୀ ଏବଂ
ରଙ୍କ ମଧ ହେଲେ ରାଜା ଏଠି,
ପ୍ରଗତିର ବାନା ତଳେ
ଦାରିଦ୍ର୍ୟର କ୍ୟାନସର ସବୁଠି ।
କଳାହାଣ୍ଡି ପାଲଟିଛି କାଲାହାରୀ ମରୁଭୂଇଁ,
ପତିତଙ୍କ ଚିନ୍ତା ପାଇଁ ବେଳ ତାଙ୍କ କାହିଁ ?
ପାଞ୍ଚ ବର୍ଷର ପରଓ୍ୱାନା ନେଇ
ସବୁକିଛି ସଂଚିବାର ଅଛି ପଞ୍ଚପୀଢ଼ି ପାଇଁ ।
ଲୋକ ପ୍ରତିନିଧି ହେଲେ ଜନପ୍ରତିଘାତୀ
ଗଢ଼ିଲେ ଯେ ଇମାରତ ନଗରେ ନଗରେ
ବୋଲାଇଲେ କଳାହାଣ୍ଡିର ବରପୁତ୍ର
ରାଜ ଛତ୍ରପତି;
ପାଇଲେ ଅନେକ କିଛି, ଫୁଲମାଳ, କରତାଳି
ପଡ଼ିଅଛି ତାଙ୍କ ଭାଗ୍ୟେ
କଟେବାର ପଶାପାଲି ।

ଇନ୍ଦିରା ଆବାସ ନାମେ ଗଢ଼ିଉଠେ ଦାରିଦ୍ର୍ୟନଗରୀ
ଜବାହାର ଯୋଜନା ନାମେ ହରିଲୁଟ ହୁଏ
ଦେଶର ତେଜୋରୀ ।
ଚପରାଶି ପିଅନଠାରୁ ନେତା ଅଭିନେତା ଯାଏଁ
ଶତକଡ଼ା ଭାଗ ବଣ୍ଟାଯାଏ ।
ସେମାନେ ହେଲେ ଦେଶର ସେବକ,

ଜନତା ତରଫରୁ ଏକ କୃତଜ୍ଞତା,
ଉତ୍କୋଚ କେ କହେ ?

ପାନଖିଆ ଅର୍ଘ୍ୟର ଦ୍ୟୋତକ
ଏ ମାଟିର ରକ୍ଷକ ପାଲଟେ ଭକ୍ଷକ,
ଏ ମାଟିର ପୁଲିସ ଓ ପିଆଦା
ଜନତାର ନୁହନ୍ତି ସେବକ,
ସେମାନେ ସମସ୍ତେ ଷାଣ୍ଢମରା ସରକାରୀ ଦାଦା ।
ସମସ୍ତଙ୍କ ମୁଠା ହୁଏ ଟାଣ,
ମୂଲିଆ ଶ୍ରମିକଙ୍କ ଭାଗ୍ୟ ହୁଏ ବାମ,
ସେମାନେ ସାକ୍ଷାତ ଯମର ନିଶାଣ,
ଏ ଦଳିତ ଜନତାର ମୁହେଁ ନାହିଁ ଭାଷା,
ଗଣତନ୍ତ୍ର ନାମେ ଆଜି
ଭୋଗୁଅଛି ମୃଗୁଣୀର ଦଶା ।

ଏକ ଦିଗେ ସେଠ ସାହୁକାର, ମୁନାଫାଖୋରୀ
ଶୋଷଣର ଜ୍ୱଳନ୍ତ ସ୍ୱାକ୍ଷର,
ଦ୍ୱିତୀୟ ରାଜକର୍ମଚାରୀ, ଦୁର୍ନୀତିର ଅଭେଦ ପ୍ରାଚୀର,
ତୃତୀୟରେ କୁଜିନେତା,
ଶୋଷଣ ଓ ତୋଷଣର ଆଗ ଧାଡ଼ି ନେତା
କାନ୍ଥବାଡ଼ ଭରିଯାଏ ଫର୍ଦ୍ଦ ଫର୍ଦ୍ଦ ଫମ୍ପା ଇସ୍ତାହାର,
ଗାଁ ଟାଉଟର ସୁଯୋଗ ନିଏ ନିରକ୍ଷରତାର ।
ଗାଁଟାତ, ନିଜ ଜମିଦାରୀ
ସ୍ୱଚ୍ଛ ଦିବାଲୋକେ ଧର୍ମକୁ ମାରେ ଆଖିଠାର ।
ତୁମେ ପରା ଲୋକଙ୍କ ସେବକ, ରାଜକର୍ମଚାରୀ
ତୁମ କର୍ମେ ଲେଖା ଖାଲି କଳାଧନ, କୋଠା ଓ ପାଚେରୀ,

ଆମ ଭାଗ୍ୟ ବନ୍ଧା କିନ୍ତୁ ଅଫିସର ନାଲିଫିତା
ଫି କଥାରେ ହାତ ଗୁଂଜା, ପ୍ରତିବାଦ କଲେ
ପୁଲିସ ଚାବୁକ୍,
ହାତ କଡ଼ି,
କଇଦୀ କ୍ରୁରତା ।
କଳାହାଣ୍ଡି ! ପୁରାଣ କହେ ଗୋସିଙ୍ଗ ଦୈତ୍ୟର ରାଜ୍ୟ
ଧର୍ମ ଅଧର୍ମର ସୀମାରେଖା ଯହିଁ
ସଭ୍ୟତାର ଧାର ଧାରେ ନାହିଁ ।

ସ୍ୱାଧୀନୋତ୍ତର ସେଇ କଳାହାଣ୍ଡି
ଶାସନ ଓ ଶୋଷଣର ଆସୁରୀ ପ୍ରଭାବେ
ତ୍ରସ୍ତ ଜନତା ଲୁଚିଛପି ବଞ୍ଚିଲେ ପଶୁସମ,
ପାହାଡ଼ ପର୍ବତେ,
ଆଉ ଭୋଗକଲେ ଯେତେସବୁ ଦାସୀ ପୁତ୍ରମାନେ
ସାମନ୍ତ ଛାପରେ, ନିଷ୍କର ଭୋଗରାଇ ଜମି,
ରାଜଛତ୍ର ତଳେ ହୋଇ ବଳିୟାନ୍
ଦରିଦ୍ର ଜନତା ପାଇଁ,
ଅଭିଶପ୍ତ ଏ ମାଟିର ହେଲେ
ସଚ୍ଚା ସଇତାନ ।

ଆଦିବାସୀ ବୋଲାଇଲେ ଭୂମିପୁତ୍ରମାନେ
ଆଶ୍ରୟ ଖୋଜିଲେ ବଣ ପାହାଡ଼ ଉହାଡ଼େ
ଶୃଙ୍ଖଳ ବିହୀନ ଏକ ଜୀବନ ସଂଧାନେ ।
ଅନୁପ୍ରବେଶୀମାନେ ହେଲେ ସେଠ ସାହୁକାର
ସବୁ କିଛି କରି ଅଧିକାର,
ବୋଲାଇଲେ ଅନ୍ଧାରୀ ମୁଲକର ଯୋଗୀ କର୍ଣ୍ଣଧାର
କଳାହାଣ୍ଡି ରହିଗଲା ନିଷ୍ପେଷିତା ନାରୀଟିଏ ହୋଇ
ବିଶ୍ୱ ଦରବାରେ ଚିତ୍ରିତା ସେ ଆଜି
ଅନାହାର, ଦାରିଦ୍ର୍ୟ ଓ
କୁତ୍ସିତ ମାନବିକତାର ଯୁଗ ପ୍ରତିଛବି ।

କଳାହାଣ୍ଡି !
ଏସିଆର ଅନ୍ୟ ଏକ ଇଥୋପିଆ
କାଙ୍ଗାଳୁଣୀ ଦି' ଭଉଣୀ ବିଶ୍ୱ ଦରବାରେ
ସର୍ବହରା, ଯୋଡହସ୍ତେ
ଦାରିଦ୍ର୍ୟର ସିଲହଟ୍ ରୂପେ ଠିଆ
ବିଶ୍ୱ ମାନଚିତ୍ର, କ୍ଷଣେ କ୍ଷଣେ ଭିନ୍ନ ରୂପ ନିଏ,
ପାଗଳର ଗାରେ ତୂଳୀ ଚିତ୍ର ପରି
ଭାଙ୍ଗିଯାଏ ବର୍ଲିନର ବିଭେଦ ପାଚେରୀ
କିନ୍ତୁ, ସବୁ ହୁଏ ଅରଣ୍ୟ ରୋଦନ,
କେ ଅବା ଶୁଣିବ ତାର ଅନ୍ତର ଗୁହାରୀ
ବିଶ୍ୱମାନବିକତା ଯେବେ ହୁଏ ଛଟପଟ
ବାରୁଦ ଧୂଆଁରେ,
ଏକ ବିରାଟ ସାମ୍ରାଜ୍ୟ ଭାଙ୍ଗିରୁଜି ଯାଏ,

ତାସ ଘରପରି ଆଖି ସାମନାରେ
ଆଉ ଗଢ଼ି ଉଠେ ପୁଂଜି ବାଦର ବିଜୟ ସ୍ତମ୍ଭ
ସାମ୍ୟବାଦର କବର ଛାତିରେ
ଶୋଷିତର ଲାଲ ପତାକା ଭିନ୍ନ ରଂଗ ନିଏ
ପରାଜୟର କଳାମୁଖା ତଳେ ।
କିଏ ଅବା ସ୍ୱପ୍ନ ଦେଖିପାରେ
ଶତାବ୍ଦୀର ଶେଷ ଚକ୍ରବାଳ ଧାରେ
ମାନବଜାତି କାନ୍ଦି ଉଠେ ମୁଠାଏ ଦାନା ପାଇଁ
ପ୍ରାଚୁର୍ଯ୍ୟର କୁବେରପୁରୀରେ ।

କିନ୍ତୁ କଳାହାଣ୍ଡି ବଦଳେନା,
ବଦଳେନା ମଣିଷର ଭାଷା
କର୍ଷଣ ପାଷାଣ ତଳେ ଆର୍ତ୍ତନାଦ କରେ
ମାନବିକତାର ଜୀଅନ୍ତା ଆତ୍ମା
ହାର ମାନିଯାଏ ପ୍ରବଞ୍ଚନା କପଟପାଶାରେ ।

କଳାହାଣ୍ଡି:
କାହିଁ ତୋର ଶ୍ୟାମାୟିତ ଶାଳବଣ,
ନିଘଞ୍ଚ ଛାୟାଚ୍ଛନ୍ନ ଶ୍ୟାମଳ ବଳୟ
କାହିଁ ତୋର ହସ୍ତୀ ଆଉ ବ୍ୟାଘ୍ରର ହେନ୍ତାଳ
କାହିଁ ତୋର ଝରଣାର କୁଳୁ କୁଳୁ ନାଦ
ପରିବେଶ ନାମେ ଆଜି ଚାଲେ ଖାଲି ବାଦ ବିସମ୍ବାଦ ;
ସୃଷ୍ଟିର ବିନାଶ ଚିନ୍ତା ଘୋଟିଛି ପ୍ରମାଦ ।
ପରିବେଶ ସୁରକ୍ଷା ଉହାଡ଼େ
ନିଃବନୀକରଣ ଚାଲୁଇ ଅବାଧେ ।
ତୁମେ କହ ପରିମଳ ପରିବେଶ କଥା
ବୁଝି କି ପାରୁନା ତୁହି ପ୍ରକୃତିର ଅବକ୍ଷୟ ଭାଷା
ଏ ମାଟି ଦିନେ ଥିଲା ଗଛ ବୃଛରେ ଭରପୁର
ଅରଣ୍ୟ ଥିଲା ପ୍ରକୃତିରାଣୀର ସବୁଜ ନୂପୁର।
କେକା କେକୀ କପୋତୀର ସ୍ୱନେ
ଶୁଣିଛୁଁ ଆମେ ଅରଣ୍ୟର ସ୍ୱର,
ସ୍ୱର୍ଗୀୟ ସିମ୍ଫୋନୀ,
ସୁଷମାରେ ସଦା ଭରପୁର ।
ଆଦିବାସୀ ଚରାଭୂଇଁ ପ୍ରକୃତି ରକ୍ଷକ

ପ୍ରକୃତି କୋଳର ଅମୃତ ଶିଶୁ ସେ
ସେ କେବେ ଚାହେଁନା ପ୍ରକୃତିର ଅବକ୍ଷୟ ସୃଷ୍ଟିର ବିଲୟ ।

ଝରଣାର କଳରବ ଜୀବନର ଅନ୍ତଃସ୍ୱର ତାର
ପ୍ରକୃତିର ବର୍ହିରୂପ ପରି ଛନ୍ଦକପଟ ବିହୀନ,
ତା ଜୀବନ ସ୍ରୋତ କଳକଳ ସହଜ ସୁନ୍ଦର,
ପଶୁପକ୍ଷୀ ଚରାଚର ବନ୍ଧା ସର୍ବେ ସୃଷ୍ଟିର ବନ୍ଧନେ,
ଆଦିବାସୀ ଜୀବନ ସଂସ୍କୃତି
ବଂଚିବା ଓ ବଢ଼ିବାରେ ନୀତି,
ସହାବସ୍ଥାନ ଜୀବନ ସଂସ୍ଥିତି ।
ଘଞ୍ଚ ଶାଳବଣ ଆଉ, ପୁଷ୍ପିତ ଶ୍ୟାମଳ ବାଟିକା
ଆଦିବାସୀ ସଂସ୍କୃତିର ଜୀବନ ନାଟିକା
ଅରଣ୍ୟ ବିନାଶ ନୁହେଁ ତାର ଲକ୍ଷ
ଫଳମୂଳ, ଲତା ପୁଷ୍ପ ଯା ଜୀବନ ସମ୍ବଳ
ତାକୁ ସେ କି କରିପାରେ କ୍ଷୟ ।
କାହିଁ ଗଲା ଆଜିତାର ଶ୍ୟାମଳ ସଂପଦ
କାହିଁ ଗଲା ଶାଳ ଓ ବାଉଁଶର ବଣ
ବ୍ୟାଘ୍ର ଆଉ ସିଂହର ଗର୍ଜନ ?
ଲାଭଖୋରୀ ଠିକାଦାର ହାତେ
କଳାହାଣ୍ଡି ହେଲା ବନଶୂନ୍ୟ ।

ପ୍ରମୋଦ ନାମରେ ନାଶ ହେଲେ ବ୍ୟାଘ୍ର ଓ ହରିଣ
ଶିଳ୍ପାୟନ ନାମେ ବନ ହୁଏ ଶୂନ୍ୟ,
ଶୂନ୍ୟ ହେଲା ବନ ଭୂଇଁ,
ଜଳଶୂନ୍ୟ ମାଟି ଓ ଆକାଶ
କେବଳ ବହେ ଭିତରେ ବାହାରେ
ନିରାଶାର ବାତ୍ୟା ଅଣଚାଶ ।

ଶୁଭିଲାନି ପ୍ରତିବାଦ ସ୍ୱର
ଜନ ପ୍ରତିନିଧି ଅବା ଯୁବଜନତାର
ହରିଲୁଟ ହେଲା କଳାହାଣ୍ଡି ରତ୍ନର ଭଣ୍ଡାର
ସର୍ବେ ହେଲେ ଏକାକାର,
ରକ୍ଷକ ଭକ୍ଷକ ଶୋଷଣର ଉଗ୍ର ମୁକ୍ତିଆର ।

ଶୋଷିତ ଏ ମାଟିପାଇଁ
ହୁଏ ଖାଲି କୁମ୍ଭୀର କାନ୍ଦଣା

ଯୋଜନା ନାମରେ ହୁଏ ଖାଲି ଭାଗବଣ୍ଟା,
ଅର୍ଥର ବାଟମାରଣା, କାହାକୁ ଅଜଣା ?
ଦରିଦ୍ର ଜନତା ଚାହିଁରହେ, ମୁଠେ ଅନ୍ନ ପାଇଁ,
ହାତରେ ତ କିଛି କାମ ନାହିଁ,
ସବୁ ଶୂନ୍ୟତାର, ଘର ଆକାଶ ଓ ଭୂଇଁ
ବଞ୍ଚିବାର ପଥ ଅବା କାହିଁ ?

ତୁମେ ଭୁଲି ଯାଅନି
ଆମେ ଏ ମାଟିର ଆଦି ଶିଶୁ,
ଏ ମାଟି ଆମ ଆଦିମାତା
ଏ ଆକାଶ, ଏ ସୂର୍ଯ୍ୟର ଅମୃତ ସନ୍ତାନ ଆମେ
ଆମର ବି ହକ୍ ଅଛି ଏ ଧରଣୀର ପ୍ରାଚୁର୍ଯ୍ୟରେ ।
ଆମେ ନୋହୁଁ ପୋଷ୍ୟପୁତ୍ର
ନୋହୁଁ ଆମେ ପକ୍ଷୀ ଯାଯାବର,
ଭିନ୍ନ ଏକ ଅଜଣା ଗ୍ରହର ।
ଆମେ ବଂଚିବାକୁ ଚାହୁଁ, ବଞ୍ଚିବାର ଅଧିକାର ନେଇ
ଆମକୁ ସାମିଲ କର ଜାତୀୟ ସ୍ରୋତରେ
ଆମେ ଚାହୁଁନା ଗଢ଼ିବାକୁ ଭିନ୍ନ ଏକ ଜାତକ
ଭିନ୍ନ ଏକ ଗୋତ୍ର,
ଆମେ ଚାହୁଁନା ବିଚ୍ଛିନ୍ନତାବାଦ,
ଅବା ସନ୍ତ୍ରାସବାଦ, ଯେତେ ସବୁ ବାହିନୀ ଓ ମୋର୍ଚ୍ଚା
ଆମକୁ ବଂଚିବାକୁ ଦିଅ ଆମରି ରାସ୍ତାରେ ।
ନ ହେଲେ ଏ ସୁପ୍ତ ଜନତାର ଆର୍ତ୍ତନାଦ
ବିସ୍ଫୋରିତ ହେବ ଅରଣ୍ୟ କ୍ଷୁଧାରେ
ଦାବାନଳ ପରି ସବୁ ଶୋଷିନେବ
କାରଣ କ୍ଷୁଧିତ ମାନେନା ଲୁହାର ଶୃଙ୍ଖଳ
ଆଉ ଝଟିକା ମାନେନା ବାଧାର ପ୍ରାଚୀର ।

କଳାହାଣ୍ଡିର କଳାରାତି ଆଉ କେତେ ଦିନ ?
ଏ ରାତିକୁ ପ୍ରଲମ୍ବିତ କରନି,
ଶତାବ୍ଦୀର ଅନ୍ଧକାର ଯାଉ ଅପସରି
ଆମେ ଚାହୁଁ ଆଲୋକ ଏକ ନୂତନ ସୂର୍ଯ୍ୟର ।
ଅନ୍ଧକାର, କ୍ଷୁଧା ଓ ନିର୍ଯ୍ୟାତନାର ଜଠର ଭେଦି
ଉଠି ଆସୁଅଛି ଯେଉଁ ନୂତନ ସୂର୍ଯ୍ୟ
ଚକ୍ରବାଳର କାଳିମା ଛେଦି,

ତାକୁ ଉଠିବାକୁ ଦିଅ, ବାଟ ଛାଡ଼,
ତୁମ ମୁଠାଏ ଛାଇର ରାହୁଗ୍ରାସ ଆଉ କେତେ ଦିନ ?

ଆମେ ଯେତେ ଅନ୍ନକ୍ଲିଷ୍ଟ, ଶୋଷିତ ଦଳିତ,
ସ୍ୱାଗତ କରୁଛୁ ଶତକଣ୍ଠେ ନୂତନ ଯୁଗକୁ,
ଏକ ନୂତନ ସୂର୍ଯ୍ୟକୁ ।
ହେ ଅଂଶୁମାନ !
ହେ ବହ୍ନିମାନ୍ !!
ଏ ନୂତନ ପ୍ରଭାତରେ କରୁ ତୁମ ଜୟଗାନ,
ଆମକୁ କର ତୁମପରି ତେଜୋଦିପ୍ତ,
ଅମଳିନ ଆଉ ମହୀୟାନ୍

■■■

(ଓଃ ଶାନ୍ତିଃ, ଶାନ୍ତିଃ ଶାନ୍ତିଃ ।)
୧୫.୬.୯୨

# ଶୀତର ଶାୟରୀ

ସଫେଦ ଚଦରଟିଏ ଘୋଡ଼ିଘାଡ଼ି ହେଇ
ସୁନାମୁହାଁ ଧାନ କିଆରୀଟା ଘୁମେଇ ପଡ଼ିଚି ଯେ
ଏ ଯାଏଁ ଆଖି ବି ମେଲିନି ।
ସାରା ରାତି ଉଜାଗର ରହି,
ଚାଷୀ ବାପୁଡ଼ା ପିକା ଟାଣି ଟାଣି
ପାଳଭୂତ ପରି ଜଗିରହିଛି ।
ତା ନିଆଁ ଉହ୍ମେଇରେ,
କୁଲାକୁଲା କୁହୁଡ଼ି ଉଝାଳି,
ଟିକେ ଆଖି ଲଗେଇବା ବେଳକୁ
ନଈ ତୁଠର ଶୀତ, ଅଟକି ଯାଇଛି
ସୋରିଷ ଖେତର ଗହଳ ପତ୍ରରେ ।
କାହୁରା ବାଲୁତ ସୁରୁଜ,
ଦି କୁଜିଆ ପାହାଡ଼ ସନ୍ଧିରୁ
ଆଖି ମଳି ଚାହିଁବ,
କୁନ୍ଥେଇ କୁନ୍ଥେଇ ଅଗଣା ଛାଡ଼ିବ;
ବସ୍ତାନୀ ପିଠିରେ ଲଦି
ସ୍କୁଲ ମୁହାଁ ଅମଙ୍ଗ ଛାତ୍ରଟିଏ ପରି

ଆଉରି କାହିଁ କେତେ ବାଟ,
ନୀଳ ଦରିଆ ପାଟ,
ଅସ୍ତାଚଳ ଘାଟ,
ଶୀତ ସକାଳ ଭାରୀ ଅମାନିଆ,
ବାନର ପିଲାଟି ପରି,
ଲଟକି ରହେ ମାଁର ବେକରେ ।
କୋଳ କରିନିଏଁ ସମସ୍ତଙ୍କୁ
ମାଟି, ସମୁଦ୍ର ଓ ଆକାଶ
ଯେତେ ସବୁ ଗଛ ବୃଛ

ବଣ ପାହାଡ଼
ସହର ତଳିଆ ଝୁଣି ବସ୍ତି
ଆଦିବାସୀ ଇନ୍ଦିରା ଆବାସ
କଫି ହାଉସରୁ
ରାଜଭବନ ଦପ୍ତର ଯାଏଁ
ସବୁଠି ତାର ଫ୍ରିପାସ୍ ।
ସମସ୍ତେ ତାର ଆପଣାର
ଦୁଃଖ ପରି ମଣିଷ ଜନ୍ମର ।

ଗୁଣ୍ଡୁଚି ମୂଷାଟି ସୂର୍ଯ୍ୟକୁ ପିଠିକରି,
ଉଷୁମ ଟାଣୁଛି,
ସକାଳୁ ସକାଳୁ ବ୍ରେକ୍ ଫାଷ୍ଟ ସାରି
ମାଁର ମଖମଲି ପିଠିରେ
ମୁହଁ ତା ମାଜୁଛି ।
କୁକୁଡ଼ାଟାବି ଛାଡ଼ିନି
ଶାବକମାନଙ୍କୁ, ଦୁଇ ଡ଼େଣାର ଅର୍ଗଳି ଭିତରୁ
ତା ଉଷୁମ ବଖରା,

ଅଗଣାରେ ତମ୍ଭୁଟାଣି,
ମାଲିକାନା ଜମେଇ ଥିବା
କୁହୁଡ଼ି କୋଳକୁ ।
ଧଡ଼ିଆ ବାବା କୁନ୍ତିପଟିଆ
ସ୍ନାନ ସାରି ସୂର୍ଯ୍ୟସ୍ତୁତିକରେ,
ଆଣ୍ଠେଇ ଆଣ୍ଠେଇ,
ନଈକୂଳିଆ ହେମାଳ ହାଓ୍ୱାରେ,
ହନୁହାଡ ତା ବଜାଏ ଠୁମୁରି
ଲହରୀର ତାଳେ ତାଳେ
କଦଳୀ ପଟୁଆ
ବୁଣିଯାଏ ଶୀତର ଶାୟରୀ ।

■■■

୨୭।୧୧।୯୫
ଜୁନାଗଡ଼

# ଚକ୍ରବାଳ

ଯୋଗସିଦ୍ଧ ସନ୍ନ୍ୟାସୀର ମୁହଁପରି ଗମ୍ଭୀର
ମହାମାନବ ଯିଶୁ ଓ ମହାତ୍ମାର
ବକ୍ଷ ପରି ପ୍ରଶସ୍ତ, ଉଦାର
ସ୍ୱଚ୍ଛ ଗିରିଝର, ମାନସରୋବର
ମାନବିକତାର ।
ରକ୍ତ ରଂଜିତ ତୁମ ଇତିବୃତ୍ତ,
ତଥାପି ଶୁଦ୍ଧ, ବୁଦ୍ଧ
ଚିର ଭାସ୍ୱର, ନବଦିଗନ୍ତ
ତୁମେ ଚକ୍ରବାଳ ।
ଚିର ସାକ୍ଷୀତୁମେ,
ସୃଷ୍ଟି ଓ ଲୟର
ଆଦି ଓ ଅନ୍ତର,
ଅତୀତ ଓ ଭବିତବ୍ୟର,
ପ୍ରଣବ ଓଁ କାର,
ଅଭିଲେଖାଗାର
ଭୂମି ଓ ଭୂମାର ।

ଲହରିର କର ତୋଳି,
ଧାଏଁ ଅବିରତ
ଭରିଦିଏ ତୁମ ପଦପ୍ରାନ୍ତ
ଅକ୍ଷୟ ଭଣ୍ଡାର, ଦେବ ରତ୍ନାକର ।
ସୂର୍ଯ୍ୟ, ଚନ୍ଦ୍ର, ନୀହାରିକା ମାଳଗୁଚ୍ଛି
ଭିକ୍ଷାପାତ୍ରେ ଉପହାର ନେଇ,
ମହାଶୂନ୍ୟ ଆସେ ନଇଁ,
ତୁମ କୋଳେ ଟୋପାଏ ଆଶିଷ ପାଇଁ ।

ସୀମାରେଖାତୁମେ
ଭୂଲୋକ, ଦ୍ୟୁଲୋକ, ମହାମିଳନର,
ଉଚ୍ଚାରିତ ଅବିରତ
ତୁମ ରାଗେ, ସୃଷ୍ଟିର ଚିରନ୍ତନ ସ୍ୱର ।
ଅପ୍ ତେଜ ମରୁତର ଶାମଗାନ
ତୁମରି ନିଃଶ୍ୱାସେ,
ଐକତାନେ ମିଳେଇ ଯାଏ
ଅଶ୍ରୁତ ଗାନରେ ।

ତୁମ ଚୂଳେ ସୁଶୋଭିତ
ଶତ ମେରୁ ଜ୍ୟୋତି
ପ୍ରଜ୍ୱଳିତ ତୁମ ଚକ୍ଷୁ
ଶତ ଧୂମକେତୁ,
ଶତ ଇନ୍ଦ୍ରଧନୁର ଆଟୋପ,
ବିରଚଇ ସ୍ୱାଗତ ତୋରଣ
ତୁମ ଭାଲପଟେ, ସଦା ଝଲଝଳ
ସଂପାର ଚମକ,
ସୀମାହୀନ ଅସୀମ ତୁମେ,
ପିପାସୁର ପ୍ରୟାସ,
ନୁହଁ ପ୍ରତାରକ ।
ଆଶାର ଆଶା,
ଅନାଗତର ଆଗତ
ସବୁ ନାସ୍ତିର ଅସ୍ତିତ୍ୱ ତୁମେ
ଦେହାତୀତ
ଜ୍ଞାନର ଦ୍ୟୋତିକ ।

■■■

୭।୧୨।୯୫
ବୁଧବାର,

# ପାଗଳ ଚିତ୍ରକର

ପ୍ରଜାପତିର ପୁଷ୍ପିତ ଡେଣାରେ
ତମାମ ପ୍ରତିଶ୍ରୁତି ନେଇ
ବୁଣିଦିଏ ପାଗଳ ଫଗୁଣ,
ସୋହାଗ ଭରା ସ୍ମୃତିର ଅଗଣାରେ
କେରି କେରି ବଉଦର କଳି ।

କୋଇଲିର କୁହୁଟିଏ ଭାସିଆସେ
ମନ ଗହନର ଗୋହିରୀ ଭିତରୁ
ମହକି ଉଠେ ଯେତେ ସବୁ ଅନ୍ଧାରୁଆ ଗଳି ।
ଧୋଇ ମାଜି ଫଗୁଣ ନେଇ ଆସେ
କଂସାରି ଘରର ପିତଳ ଗରାପରି
ପ୍ରଦୂଷିତ ସମୟର ଫରଚା ଫର୍ଦ୍ଦଟିଏ;
ମଳୟ ଚାଟିନିଏ ଯେତେସବୁ ଆଇଁସିଆ କାତି
ଶେଷପତ୍ର ସହ ଝରିପଡ଼େ ପଉଷର ରାତି
ଚଇତ ଆସେ ପାଟ ଛତି ପବନେ ଉଡାଇ
ଚଇତି ଘୋଡାରେ ।
ପାତ୍ର ମନ୍ତ୍ରୀ ପାରିଷଦ ସହ,
ଋତୁରାଜ ବସନ୍ତର ଶିବିରଟିଏ,
ବାରି ହୁଏ, ବିଜୟର ବାସନ୍ତୀ- ପ୍ରଗଣା ।

ସୁଶୋଭନ ଗଛ ବୃକ୍ଷ, ମହମହ ଗିରି ଘାଟ
ଭେଟାଭେଟି, କୋଳାକୋଳି
ପରଦେଶୀ କେତେ ମଧୁଲିଟ
ଝୁଲି ଝୁଲି ଗାଉଛନ୍ତି, ମହୁଲି ନିଶାରେ
ପାରିତୋଷ, ବାସନ୍ତୀକ ଭଂଟ ।

ଫଗୁଣ ଏକ ହଳଦୀବସନ୍ତ,
ସ୍ୱପ୍ନର ଫୁଲୁରି ପକ୍ଷୀଟିଏ,
କେଉଁଠି ଅବା କେତେବେଳେ, ସୁରଟିଏ ମେଲିଦିଏ,
ତା ରଂଗିନ ପରଟିଏ ଝୁଲିରହେ, ଚଇତାଳି ଉଷୁମ ହାଓ୍ୱାରେ
ଗୁଡ଼ିଟିଏ ହୋଇ ସ୍ମୃତିର ଡାଳରେ ।

ଫଗୁଣବି ଚାଲିଯାଏ ବାଟ ଭାଙ୍ଗି,
ଦେଖି ଦେଖି ନ ଦେଖିଲା ପରି
ଛୁଇଁ ଛୁଇଁ ନ ଛୁଇଁବାପରି,
ନିଛାଟିଆ ପାହାଡ଼ି ରାସ୍ତାରେ ।
ଝରଣାର କୂଳେ କୂଳେ,
ଲାଜକୁଳୀ ଗିରିଜନ
ଅଜନବୀ ଝିଅଟିଏ ପରି ।

ଫଗୁଣ ଏକ ବହୁରୂପୀ ଚିତ୍ରକର
ଆଙ୍କିଦିଏ କେତେ ରୂପ କେତେ ରଂଗ
ସମୁଦ୍ର ବେଳାର
ଚେତନାର ଚଇତାଳିଟିଏ
ଭାବମୟ ସାଗର ଉର୍ମିର ।

■■■

୧।୪।୯୬
ସୋମବାର

# ନଂଗା ପାହାଡ଼

ଆଦିମ ମୂକ ମଣିଷଟେ,
କେତେକାଳୁ ଗୁମ ମାରି ବସିପଡ଼ିଛି ଯେ
ମୁହଁ ବି ଟେକୁନି, ଅଟକି ରହିଛି
ନିଜ ଶବର ସବାରୀ ହୋଇ
ହୁଏତ ରାସ୍ତାରେ ଭୁଲି ଯାଇଛି ନିଜର ଠିକଣା,
ମଣିଷ ଗୋଠରେ ହୋଇ ବାଟବଣା
(ମଣିଷ: ନିଜ ଠିକଣା ନିଜକୁ ଅଜଣା
ସେ ପୁଣି ଦେବ ଅନ୍ୟର ଠିକଣା !)

ତେଣୁ ଅନିଷା କରିବା ଭଲ
ସମୟ କଥା ଦେଇ ଯାଇଛି
ସେ ପୁଣି ଫେରିବ ନେଉଟା ବେଳରେ,
ଯେତେବେଳେ ପୃଥିବୀ, ତାରା ଓ ଧୂମକେତୁମାନେ
ଫେରିବେ ନୂତନ କକ୍ଷରେ
ଜାହାଜ ତା'ର ମଙ୍ଗ ବୁଲାଇବ ଅନ୍ତିମ ଯାତ୍ରାରୁ ।

ଗୋଡ଼ଦିଟା ପୋତି ହେଇଛି ଯେ
ସାତତାଳ ଅକାତ ପଙ୍କରେ
ବୁଡ଼ି ଯାଉଥିବା ଆର୍ତ୍ତୀ ମଣିଷ
ହାତ ଦିଟା ଟେକି ଦେଇଛି, ଆରକ୍ଷ ମୁଦ୍ରାରେ ।
ଛୁଇଁବି ଛୁଇଁବି ହୋଇ, ଛୁଇଁବି ପାରୁନି ।
ମୁଣ୍ଡ ଉପରର ଟେକାଏ ଆକାଶ
ଶାପଗ୍ରସ୍ତ ପକ୍ଷଟିଏ, ଅବା ଧ୍ୟାନମଗ୍ନ ଯୋଗୀ
ଦୋହରାଏ ସୃଷ୍ଟିର ଅନ୍ତିମ ପଞ୍ଚାକ୍ଷରୀ ମନ୍ତ୍ର ।

ସେଦିନ
ତା ନିଜର ଥିଲା ଏକ ସ୍ୱତନ୍ତ୍ର ପରିଭାଷା
ପକ୍ଷୀଙ୍କ କାକଳି ଆଉ ଶ୍ୱାପଦଙ୍କ ହେନ୍ତାଳ ଶବ୍ଦରେ ।
ତା ବିପୁଳ ସ୍ତନ୍ୟଦାନେ ପରିପୁଷ୍ଟ ସବୁଜ ଅଚର
ନିତ୍ୟସ୍ନାନ ପରିମଳ ଧବଳ ଜ୍ୟୋସ୍ନାରେ
ପରିଧାନ ବାଳସୂର୍ଯ୍ୟ ଲୋହିତ ରଶ୍ମିର
ଶୋଇ ପଡ଼େଁ ଗହନ ନିଦରେ
ଶିଶିରର ଶୀତଳତା ନେଇ
ତାରକିତ ଆକାଶର ଛାଇ ।
ପବନ ବି ଆଉଁଶି ଦେଉଥିଲା
ଆଦିମ ଏକ ଲୋରୀ ଦୋହରାଇ ।

ସେଦିନ ଯାଇଛି ହଜି,
ଅସହ୍ୟ ହୁଏ ମାନବ ହୀଂସ୍ରତା
ଖିନ୍‌ଭିନ୍ କରି ଖାଏ ହାଡ଼ ଓ ମାଉଁଶ
ହରିଣଟିଏ ମୁଁ ଆଜି ଶାର୍ଦ୍ଦୁଳର ମୁନିଆଁ ଦାନ୍ତରେ ।
ମୋ ବକ୍ଷ ବିଦୀର୍ଣ୍ଣ କରେ ଗୋଳା ଓ ବାରୁଦ,
ମୋ ପଞ୍ଜରା ଭାଙ୍ଗିଯାଏ ସାମନା କାଚପରି
ଦୁର୍ଘଟଣାର ଦାରୁଣ ଧକ୍‌କାରେ)

ଯେତେବେଳେ ପୃଥିବୀ, ତାରା ଓ ଧୂମକେତୁମାନେ
ଫେରିବେ ନୂତନ ପଥରେ,
ମୋ ଶବ ସଂସ୍କାର ଚାଲିଥିବ ପ୍ରଳୟର ଜଙ୍ଗଲ ନିଆଁରେ
ସୃଷ୍ଟି ଲୁହ ସମୁଦ୍ରରେ, ମୋ ଶବ ଭାସିବ,
ସହାବସ୍ଥାନର ଅବର୍ତ୍ତମାନରେ ।

■■■

୨୬।୩।୯୬
ଚୈତ୍ରପର୍ବ

# ଅଭୀପ୍ସା

ମନକୁ ପାଇବାପରି ଗୀତଟେ ଗାଇବି ବୋଲି
କେତେ ମୁଁ ସାଧନା କଲି
ତଥାପି ସୁରଟେ ମିଳିଲାନି
ଯା ହେଇଥାନ୍ତା ଶେଷ ମୋର ଜୀବନ ସଙ୍ଗୀତ ।

କବିତାଟେ ଲେଖିବି ଲେଖିବି ହୋଇ ଆୟୁଷ ସରିଲା
ଗ୍ରୀଷ୍ମ ଯାଇ ଶୀତ ବି ଆସିଲା
ପତ୍ର ଝଡାପରେ ମନମରୁର କୃଷ୍ଣଚୂଡାରେ
ଫୁଲବି ନେସି ହେଇଗଲା,
ହଳଦୀ ବସନ୍ତବି ସବୁ ବସନ୍ତରେ
ରୁଟିନ୍ ମୁତାବକ ଗୀତ ଗାଇଗଲା
ତଥାପି କବିତାଟେ ଅଧୁରା ରହିଲା
ଯା' ମୁଁ ଶୁଣିଥାନ୍ତି ଅନ୍ତିମ ଶଯ୍ୟାରେ ।

ବାଟ ଅବାଟରେ
ଚାଲି ଚାଲି ଥକା ନେବା ବେଳେ
କେଉଁ ଗଛ ଛାଇ ଅବା
ପଥପ୍ରାନ୍ତ ନିରୋଳା ଡାକ ବଙ୍ଗଳାରେ
କିଏ ବି ସାଥୀଟିଏ ଆସିଲାନି ସଂଖୋଳି ନେବାକୁ,
ଭୁଲାଣିଆ ଦୋଛକି ରାସ୍ତାରୁ ।

ବେସୁରା ହେଉ ପଛେ ମୋ ସଂଗୀତ
ଅକବିତା ହେଉପଛେ ମୋ କବିତା
ମୋ ସୁରରେ ତାଳ ଦେବାକୁ ନ ଆସନ୍ତୁ କେହି
ତଥାପି ମୋ ଚଲାପଥର ସହଯାତ୍ରୀ
ମୋ ସୁର ମୋ କବିତା
ଓ ମୋର ନିଜସ୍ୱ ସତ୍ତା ।

■■■
୨୮।୬।୯୬

# ମଝି ପାହାଚରେ ମଣିଷ

ମଝି ପାହାଚରେ ଠିଆ ଏକ ମଣିଷ
ବିଦଗ୍ଧ ଆତ୍ମାଟିଏ ।
ନା ଟେକି ପାରୁଛି ପାଦ ଦୁଇଟି ଶୂନ୍ୟକୁ
ନା ଥୋଇ ପାରୁଛି ମାଟିକୁ
ଲଟକି ଯାଇଛି ଯେମିତି କାଳର କ୍ରୁଶରେ ।

ଯନ୍ତ୍ରଣାରେ ଛଟପଟ ଏକ ରେଶମ ପ୍ରଜାପତି
ଗବେଷକର ତୀକ୍ଷ୍ଣ ଛୁରିକା ଘାତରେ ।
ଏଇ ମୁହୂର୍ତ୍ତରେ କିଏ ଜଣେ
ଆର୍ତ୍ତ ଅପପୁରୁଷ ହେଲେ ମାଗନ୍ତା, ଟାଖଣ୍ଡେ ମାଟି,
ଶୂନ୍ୟରେ ଟଳମଳ, ତା ଏକ ପାଦ ଥୋଇବାକୁ ?
ପାତି ଦିଅନ୍ତି ମୋ ମଥା
କଟି ଯା'ନ୍ତା ସବୁ ଯାତନା
ଭୟ ଓ ନରକର ବ୍ୟଥା ।
ଫୁଟି ଆସନ୍ତା ହେଲେ
ଅନ୍ଧାର ପାହାଚ ତଳୁ ପଦ୍ମ କଢ଼ିପରି ଏକଇ ଆଙ୍ଗୁଠି
ଆଉ ମୁଁ ହୋଇଯାନ୍ତି ଗିରିଗୋବର୍ଦ୍ଧନ,
ବିରାଜୁଥାନ୍ତି ଛତ୍ର ଛାୟାର
ଛାୟାପଥ ଧାରେ, ଆଲୋକିତ ଧ୍ରୁବ ମଣ୍ଡଳରେ
ଅବା, ସାତ ତାଳ ଅତୋଦ୍ୟ ପଙ୍କରେ,
ସେ ତ ଜାଣେନା, ମୁକ୍ତି ତାର
ଆଲୋକରେ ଅବା ଅନ୍ଧକାରେ
ତେଣୁ ତ ଅଟକି ଯାଇଛି ପାଦ,
ସ୍ୱର୍ଗ ଓ ନର୍କର
ଦେହଳୀ ଦ୍ୱନ୍ଦରେ ।

■■■

୨୭।୧୧।୯୭





ତ୍ରିଲୋଚନ ସିଂହ

କଳାହାଣ୍ଡି ଜିଲ୍ଲାନ୍ତର୍ଗତ ମହିଲୋ ଗ୍ରାମର ଏକ ନିମ୍ନବର୍ଗ କୃଷକ ପରିବାରରେ କବି ଶ୍ରୀ ତ୍ରିଲୋଚନ ସିଂହଙ୍କର ଜନ୍ମ । ସାମାଜିକ ଓ ଆର୍ଥିକ ଘାତପ୍ରତିଘାତ ସତ୍ତ୍ୱେ ଇଂରାଜୀ ସାହିତ୍ୟରେ ସେ ହାସଲ କରିଛନ୍ତି ସ୍ନାତକୋତ୍ତର ଡିଗ୍ରୀ । ବୃତ୍ତିରେ ଶିକ୍ଷକ ଓ ପ୍ରବୃତ୍ତିରେ ସାହିତ୍ୟିକ ଶ୍ରୀ ସିଂହଙ୍କ ସାହିତ୍ୟକୃତିଗୁଡ଼ିକ ସମାଜର ଦଳିତବର୍ଗ ଓ ପ୍ରବଞ୍ଚିତ ଶ୍ରେଣୀର ଜନଜୀବନ ଉପରେ ଆଧାରିତ । କଳାହାଣ୍ଡିର ପୃଷ୍ଠଭୂମିରେ ରଚିତ 'ପାହାଡ଼ୀ କନ୍ୟା'. ଏବଂ ଗଡ଼ଜାତ ମୁଲକର ସ୍ୱାଧୀନତା ସଂଗ୍ରାମ ପଟ୍ଟଭୂମିରେ ଲିଖିତ 'କ୍ରାନ୍ତିକାରୀ' – ଶ୍ରୀ ସିଂହଙ୍କର ଦୁଇଟି ଉଲ୍ଲେଖନୀୟ ଉପନ୍ୟାସ ।

କବିତା, କ୍ଷୁଦ୍ରଗଳ୍ପ, ଉପନ୍ୟାସ ବ୍ୟତୀତ ପ୍ରବନ୍ଧ ଓ ଶିଶୁସାହିତ୍ୟ କ୍ଷେତ୍ରରେ ମଧ୍ୟ ତାଙ୍କର ଲେଖନୀ ସକ୍ରିୟ ।